# ଅବସ୍ଥାଚକ୍ର

ଲେଖକ—

ପଣ୍ଡିତ ଶ୍ରୀ ରଘୁନାଥ ମିଶ୍ର ଶାସ୍ତ୍ରୀ

ଅଧ୍ୟାପକ, ଖଲ୍ଲିକୋଟ କଲେଜ, ବ୍ରହ୍ମପୁର

ପ୍ରଥମ ମୁଦ୍ରଣ

ପ୍ରକାଶକ

ଛାତ୍ର-ବନ୍ଧୁ-ସଂଘ

ବ୍ରହ୍ମପୁର

୧୯୫୫

ମୂଲ୍ୟ—ଚଉଦଅଣା ମାତ୍ର

# ସୂଚୀ

# ଅବସ୍ଥାଚକ୍ର

ଏହି ଦୃଶ୍ୟମାନ ଜଗତରେ କେତେ ପ୍ରକାର ଯେ, ପ୍ରାଣୀ ସୃଷ୍ଟି ହୋଇ ଅଛନ୍ତି, ସେମାନଙ୍କର ଅଲଗା ଅଲଗା ନାମକରଣ କରି, ବେଦରେ ବା ପୁରାଣାଦିରେ କୁହାଯାଇ ନାହିଁ । କ୍ରମଶଃ ଶିକ୍ଷାର ପ୍ରସାର ଯୁଗଯୁଗାନ୍ତରରୁ ଚାଲିଆସିଛି । ଶିକ୍ଷାର ଅଭିବୃଦ୍ଧିରେ ଲୋକ ସମାଜର ଜ୍ଞାନ ଉତ୍ତରୋତ୍ତର ବଢ଼ୁଛି । ସୁତରାଂ ବସ୍ତୁ ବା ପ୍ରାଣୀର ନୂତନ ନାମକରଣ କରି ଚାଲିଛି ।

ପ୍ରାଣୀର ଭବିଷ୍ୟତ ଦୃଷ୍ଟିରୁ ଶିକ୍ଷାର ବ୍ୟବସ୍ଥା କରି ହୋଇ ଥାଏ । ସୁତରାଂ ପ୍ରାଚୀନ ମୁନି, ଋଷିମାନେ କେବଳ ଶିକ୍ଷାର ମୋହରେ ମୁଗ୍ଧ ହୋଇଯାଇ ବସି ନଥିଲେ । ମାନବ ସମାଜର ସର୍ବାଙ୍ଗୀନ ଉନ୍ନତି ଦିଗରେ ଦୃଷ୍ଟିଦେଇ ଗ୍ରନ୍ଥ ପ୍ରଣୟନ କରି, ସାଧାରଣ ଶିକ୍ଷା ଦେଉଥିଲେ । ସେମାନେ ନିଜ ନିଜର ଅନୁଭୂତି ଓ ଜ୍ଞାନ ବଳରେ ଉତ୍ତମରୂପେ ଜାଣିପାରି ଥିଲେ ଯେ, ରାଜନୀତି ଯୋଗେ କେବଳ ଦୁଷ୍ଟମାନଙ୍କ ଆକ୍ରମଣରୁ ଦେଶକୁ ରକ୍ଷା କରାଯାଇ ଥାଏ । କିନ୍ତୁ ସାମାଜିକ ବା କୌଳିକ ନୀତି-ଶୃଙ୍ଖଳା ରକ୍ଷା କରିବା

ସାମର୍ଥ୍ୟ ରାଜନୀତିରେ ନାହିଁ । ରାଜନୀତିରେ ତାହା ରହିବା ମଧ୍ୟ ଅନାବଶ୍ୟକ । ପ୍ରଚଳିତ ବସ୍ତୁବାଦ ଯୁଗରେ ତାହାହିଁ ନୀତିରୂପେ ଦେଖା ଦେଇଛି ।

ବହୁରୂପା ରାଜନୀତି ଲୋକ ସମାଜର ସାମୟିକ ମନୋଭାବକୁ ନେଇ, ନାନା ରୂପରେ ଦେଖାଦେଲେ ଜନମନୋରଞ୍ଜନ କରିଥାଏ । ଏ ଯୁଗରେ ନବ ନବ ନୀତି ଦେଖି ଅତଙ୍କିତ ଓ ଅସ୍ଥିରମନସ୍କ ହେବାର କାରଣ କିଛିହେଲେ ନାହିଁ । ଯେଉଁମାନେ ଆଧୁନିକ ଯୁଗୋଚିତ ରାଜନୀତିରେ ପ୍ରମାଦ ମଣୁଛନ୍ତି ସେଥିର କାରଣ ଏହି ଯେ, ପୂର୍ବଯୁଗମାନଙ୍କରେ ରାଜନୀତି ସହ ଧର୍ମନୀତି ସଂପୃକ୍ତଥିଲା । ଧର୍ମନୀତିପରାୟଣ ସ୍ନାତକମାନେ ପରିଣତ ଅବସ୍ଥାରେ ରାଜନୀତି ପ୍ରଣୟନ ବା ପରିଚାଳନାରେ ଯୋଗଦେଇ ଦକ୍ଷତା ସହକାରେ ରାଷ୍ଟ୍ର ପରିଚାଳନା କାର୍ଯ୍ୟ ସମାହିତ କରୁଥିଲେ । ସୁତରାଂ ଧର୍ମ ବିଶ୍ୱାସରେ କୌଣସି ପ୍ରକାର ବାଧା ଅସି ନଥିଲା । ଧର୍ମରେ ବିଶ୍ୱାସ ଥିବାରୁ ଲୋକମାନେ ସତ୍ୟପରାୟଣ ଥିଲେ । ରାଷ୍ଟ୍ରରେ ମିଥ୍ୟା ପ୍ରବଞ୍ଚନାର ପ୍ରସାର ହୋଇ ପାରୁ ନ ଥିଲା । ଅତଏବ ରାଜନୀତି ସୁରୁଖୁରୁରେ ପରିଚାଳିତ ହେଉଥିଲା ।

ପ୍ରବର୍ତ୍ତମାନ ଯୁଗରେ ଲୋକେ ଅତ୍ୟନ୍ତ ଚତୁର ଓ ଶିକ୍ଷିତ ହୋଇଯିବାରୁ କୂଟନୀତି ପ୍ରଧାନ ରାଜନୀତି ନ ହେଲେ ନ ଚଳେ ବୋଲି ତାହା ସର୍ବତ୍ର ପ୍ରଚଳିତ ହେଲେ । କୂଟନୀତିର ଉପଯୋଗୀ ହେଲାଭଳି ପୁସ୍ତକ ବା ଗ୍ରନ୍ଥମାନ ନବ୍ୟ ଶିକ୍ଷାଲୋକିତ ଶିକ୍ଷିତ ବ୍ୟକ୍ତିମାନେ ଲେଖିଗଲେ । କୂଟନୈତିକ ଗ୍ରନ୍ଥନିଚୟରେ ଧର୍ମଭାବର ସ୍ଥାନ ବା କାହୁଁ ଅସିବ ? କେବଳ ବାସ୍ତବ ବିଷୟଗୁଡ଼ିଏ ସଂଗ୍ରହ କରି ଗ୍ରନ୍ଥରେ ଗୁମ୍ଫିତ କରାଯାଉଅଛି । ବାସ୍ତବ ବସ୍ତୁଜାତର ଅନିତ୍ୟତା ସମ୍ବନ୍ଧେ ଜୋର ଦେଇ ପଦେ ହେଲେ ତହିଁରେ ଲେଖାଯାଉ ନାହିଁ । ଅଥଚ ଅତି ସରଳ ସୁବୋଧ ଭାଷାରେ ତାହା

ଲକ୍ଷିତ ହେବାଦ୍ୱାରା ସହଜ ବୋଧ ହୋଇ, ଲୋକସାଧାରଣରେ ବହୁଳ ଭାବେ ପ୍ରଚାରିତ ହେବାରୁ କୁଟିଳ ଭାବ ବଢ଼ି ଯାଉଛି । ଅଜ୍ଞ ଲୋକମାନଙ୍କ ମନରେ ନିତ୍ୟାନିତ୍ୟ ବସ୍ତୁ ବିବେଚନାର ଟିକିଏ ହେଲେ ସ୍ଥାନ ପାଇପାରୁ ନାହିଁ । ନିତ୍ୟାନିତ୍ୟ ଜ୍ଞାନର ଅଭାବରୁ ଲୋକେ ଐହିକ ସୁଖର ମାୟାଜାଲରେ ନିବିଡ଼ ଭାବେ ଆବଦ୍ଧ ରହୁଛନ୍ତି । ପରେ ସକଳ ପ୍ରକାର ବିପଦର ସମ୍ମୁଖୀନ ହୋଇ ବିବିଧ ଯନ୍ତ୍ରଣା ଭୋଗ କରି ଅକାଳରେ ଇହଲୀଳା ସାଙ୍ଗ କରନ୍ତି ।

ଯୋଗ ବଳରେ ଯୋଗୀମାନେ ଏହା ସବୁ ଅବଗତ ହୋଇ ଲୋକର ଚରମ କଲ୍ୟାଣ ବାଞ୍ଛାରେ ମାନବର ଜୀବିତ କାଳକୁ ଛ'ଗୋଟି ଅବସ୍ଥାରେ ବିଭକ୍ତ କରିଦେଇ, ଯେଉଁ ଅବସ୍ଥାରେ ଯାହା କର୍ତ୍ତବ୍ୟ ତାହା ଦେଖି ଆଚରି ପରମ ଆନନ୍ଦ ଉପଭୋଗ କରିଥାନ୍ତି । ସେହି ଅନାବିଳ 'ଆନନ୍ଦ'କୁ ପରଂବ୍ରହ୍ମ ବୋଲି କହା ଯାଇଥାଏ । ସୁତରାଂ 'ସତ୍ୟଚିଦାନନ୍ଦମୟଂବ୍ରହ୍ମ' ଏହି ମହାବାକ୍ୟ ପ୍ରସିଦ୍ଧ ।

ସତ୍ୟ, ଚିତ୍, ଆନନ୍ଦମୟ ବ୍ରହ୍ମ, ଏହାହିଁ ଅବସ୍ଥାଚକ୍ର ବିଶ୍ଳେଷଣର ଉଦ୍ଦେଶ୍ୟ । ଏଥିପୂର୍ବରୁ ବହୁ ପୁରାଣାଦି ଜଟିଳତର ଭାଷା ଓ ଭାବରେ ପ୍ରକାଶିତ ହୋଇଅଛି, ତଥାପି କାଳୋଚିତ ବିବେଚନାରେ ସେହି ଅବସ୍ଥାମୂଳକ ଭାବର ସହଜ ବୋଧ ଭାଷାରେ ବିଶ୍ଳେଷଣର ଆବଶ୍ୟକତା ଉପଲବ୍ଧି କରି ଏହି ପ୍ରବନ୍ଧରେ ପ୍ରକାଶ କରାଯାଇଛି । ଏଥିରୁ ସଂସାରର ନଶ୍ୱରତା ସହଜରେ ପ୍ରତିପାଦିତ ହେବ ।

## ବାଲ୍ୟ

ବାଲ୍ୟକାଳରେ ବାଳକ ସଂସାରର ଜଞ୍ଜାଳ କଥା କିଛିହେଲେ ଜାଣି ନ ଥାଏ । କେବଳ ଖାଇବା, ଶୋଇବା

ଖେଳିବା, ଏହା ଛଡ଼ା ଆଉ କିଛି ବୁଝିପାରେ ନାହିଁ । ତାର ମନରେ ଥିବା ଭାବକୁ ଉତ୍ତମରୂପେ କହିବା ଶକ୍ତି ମଧ୍ୟ ନ ଥିବାରୁ ଅତି ମନୋରମ ଚିତ୍ତାକର୍ଷକ ଅର୍ଦ୍ଧ ବାକ୍ୟଗୁଡ଼ିଏ ମୁଖରେ ପ୍ରକାଶ କରି ମାତା, ପିତା ପ୍ରଭୃତି ସାମାଜିକମାନଙ୍କର ପ୍ରୀତିଭାଜନ ହୋଇ ପଡ଼େ । ତାର କଥାରେ ଅବିଳତାର ସମ୍ପର୍କ ଦେଖା ଯାଉ ନ ଥିବାରୁ ଲୋକଙ୍କର ମନ ଆକୃଷ୍ଟ ହୁଏ । ଏକମାତ୍ର ସତ୍ୟର ପ୍ରତିଷ୍ଠାନର ସ୍ୱରୂପ ବାଳକ । ସତ୍ୟରେ ପରମ ଆନନ୍ଦ ମିଳେ । ତାହାର ଅସ୍ଫୁଟ କଥା ଶୁଣି କାହା ମନରେ କେତେ କଷ୍ଟ ଥିଲେ ମଧ୍ୟ ସେହି ଦରବୋଲି କଥା ଶୁଣିବା ମାତ୍ରକେ କ୍ଷଣକ ପାଇଁ, ମଣିଷର ସକଳ ଦୁଃଖ ଦୁଶ୍ଚିନ୍ତା ଭୁଲି ହୋଇଯାଏ । ଜନକ ଜନନୀଙ୍କର ବାତ୍ସଲ୍ୟପୂର୍ଣ୍ଣ ଆଦର, ସମ୍ଭାଷଣ ଶୁଣି ବାଳକ ପ୍ରମୁଦିତ ମନରେ ମନ୍ଦ ମନ୍ଦ ହସି ଗୋଟିଏ ଗୋଟିଏ ଅଯଥା କଥାରେ ହଠି ବସେ ବା ହଠ କରେ । ଯାହାକି କେବେହେଲେ ପୂରଣ କରିହେବ ନାହିଁ ।

ଉଦାହରଣ ସ୍ୱରୂପ ଗୋଟିଏ ପ୍ରାଚୀନ କିମ୍ବଦନ୍ତୀ ଏଠାରେ ଲେଖିଲେ ବୋଧ ହୁଏ ଅସଙ୍ଗତ ହେବ ନାହିଁ—

ଗୋଟିଏ ଅଗ୍ରାହାରରେ ଅନେକ ବ୍ରାହ୍ମଣ ତ ବାସ କରିଥାନ୍ତି, ତନ୍ମଧ୍ୟରୁ ଜଣେ ଉତ୍ତମ ଭାବେ, ପୁରାଣ, ଦର୍ଶନ, ଆୟୁର୍ବେଦ, ଧନୁର୍ବେଦ ଏବଂ ନିଗମ ଶାସ୍ତ୍ରମାନଙ୍କରେ ପ୍ରଗଲ୍‌ଭ ପାଣ୍ଡିତ୍ୟ ଲାଭକରି, ପାରିବାରିକ ନୀତି, ଧର୍ମ ନୀତି, ସାମାଜିକ ନୀତି, ରାଜନୀତି, କୌଟିଲ୍ୟ ନୀତି ଓ ଅର୍ଥନୀତି ନିପୁଣ ହୋଇ ଗୋଟିଏ ରାଜଧାନୀରେ ରାଜଗୁରୁ ବା ପୁରୋଧା ହୋଇ ବହୁ ଦିନରୁ ଚଳି ଆସୁଥିଲେ ।

ପାରିବାରିକ ସମ୍ପତ୍ତି ସୁଖପ୍ରଦା ହେଲେ ମଧ୍ୟ ଶାନ୍ତି ଦାୟିନୀ ନୁହେଁ—ଏହା ସର୍ବଜନାନୁମୋଦିତ । ଧନୀ ହୋଇଥିଲେ ମଧ୍ୟ

କୁଟୁମ୍ବୀ ହେବା ଯୋଗେ ପୁତ୍ର, କଳତ୍ର, ଦୁହିତାଦିଙ୍କ ଗ୍ରାସାଚ୍ଛାଦନ ଶିକ୍ଷା ଓ ରୋଗାଦି ଉପଶମନ ଇତ୍ୟାଦିରେ ଅତିବ୍ୟସ୍ତ ବ୍ୟସ୍ତାଳୀ ହୋଇ ଯିବାରୁ ମୁହୂର୍ତ୍ତେ ହେଲେ ସୁଦ୍ଧା ଅନାବିଳଶାନ୍ତି ଉପଭୋଗ କରିପାରେ ନାହିଁ । ଏହା ପ୍ରତ୍ୟେକ ଗୃହଧର୍ମୀ ଅନୁଭବ କରି ଥିବେ । ତେବେ ଏହାଦ୍ୱାରା ଗୃହସ୍ଥାଶ୍ରମର ନିନ୍ଦା କରାଯାଉ ନାହିଁ । ଏହାର ଉଦ୍ଦେଶ୍ୟ ଏହି ଯେ,—ଗୃହସ୍ଥାଶ୍ରମ ସକଳ ଆଶ୍ରମ ଅପେକ୍ଷା ଉତ୍କୃଷ୍ଟ,—କାହିଁକି ? (୧) ବ୍ରହ୍ମଚର୍ଯ୍ୟାଶ୍ରମରେ ଜାଗତିକ ପ୍ରାଣିମାନଙ୍କର ସର୍ବତୋଭାବରେ—ଉପକାରାର୍ଥ ଓ ନିଜର ପରମାର୍ଥ ଲାଭ ପାଇଁ କେବଳ ଜ୍ଞାନାର୍ଜନ କରାଯାଏ । (୨) ଗୃହସ୍ଥାଶ୍ରମରେ ଗୃହୀ ସକଳ ପ୍ରାଣିଙ୍କର ପ୍ରତ୍ୟକ୍ଷ ଉପକାର କରେ ଏବଂ ଅପରର ଖାଦ୍ୟାଦି ବ୍ୟବସ୍ଥା ନକରି ନିଜର ଭୋଜନର ବ୍ୟବସ୍ଥା କରେନା । ଦୈନନ୍ଦିନ ଅନୁଷ୍ଠାନିକ କାର୍ଯ୍ୟ ଗୁଡ଼ିକରେ ତାହାହିଁ ପ୍ରତିପାଦିତ ହେଉଅଛି । ପ୍ରତିଦିନ ଜଳତର୍ପଣରେ କେବଳ ପାର୍ଥିବ ପ୍ରାଣୀ ନୁହେ, ଅନନ୍ତ ବ୍ରହ୍ମାଣ୍ଡମଣ୍ଡଳରେ ଏବଂ ଯମ ଯାତନାଦି ଭୋଗୁଥିବା ପ୍ରାଣିମାନଙ୍କୁ ଜଳଦାନ କରାହୁଏ । ଦେବ ପୂଜାନନ୍ତର ଅପରାହ୍ଣ ବୈଶ୍ୱଦେବ ବା ପଞ୍ଚମହାଯଜ୍ଞ ବ୍ୟବସ୍ଥାରେ— ଏପରି ନିୟମ ରଖା ଯାଇଛି ଯେ, ଗୃହମେଧୀ ଦିନକ ପାଇଁ ସୁଦ୍ଧା—ଅଗନ୍ତୁକ ଅତିଥି କୁ ଭୋଜନ ନଦେଇ ନିଜେ ଭୋଜନ କରିବ ନାହିଁ । କାଳେ ଯଦି ଅତିଥି ସତ୍କାର ନଘଟେ ତେବେ ଯଜ୍ଞରେ ଗୋଟିଏ ପତ୍ରରେ ଅନ୍ନାଦି ଦେଇ ନିବେଦନ କରାଯାଏ । ଅତଏବ ଗୃହ ଅପର ଆଶ୍ରମ ଅପେକ୍ଷା ଅଧିକ । କିନ୍ତୁ ଆଜି କାଲି ଯାହା ସମାଜରେ ଦେଖାଯାଉଛି—ସେଥିରେ ଏ ନିୟମ ଗୁଡ଼ିକ ଉପହସିତ ହୋଇଲେ ରକ୍ଷା । ଧର୍ମରୁ ତ ବିଶ୍ୱାସ—ବିଦାୟ ନେଇ ଚାଲିଗଲେଣି ଆଉ ଏ ନିୟମ ପାଳିବ କିଏ ?

ରାଜଗୁରୁ ମହାଶୟ ଜଣେ ଗୃହସ୍ଥ, ସୁତରାଂ ଗୃହକର୍ମାଳରୁ ଅବା ମୁକୁଳିବେ—କିମିତି ? । ରାଜକାର୍ଯ୍ୟର ଗୁରୁତା ଉପଲବ୍ଧି କରୁଥିଲେ ସୁଦ୍ଧା, ପାରିବାରିକକାର୍ଯ୍ୟ ପ୍ରତି ଦୃଷ୍ଟି ନ ରଖିଲେ ନ ଚଳେ । ପରିବାର ମଧ୍ୟରେ ଯୋଡ଼ାଏ—ଅଳ୍ପ ବୟସ୍କା କନ୍ୟା, ଅଉ ଗୋଟିଏ ମାତ୍ର ତିନିବର୍ଷର ମାତୃଛେଉଣ୍ଡ ପୁଅ । ଏହି ତିନୋଟିଯାକ ସନ୍ତାନର ସକଳଭାର ରାଜଗୁରୁଙ୍କ ଉପରେ ନ୍ୟସ୍ତ । ପିଲାଙ୍କ ଗାଧୁଆ ପାଧୁଆ, ଖିଆ, ପିଆ ପ୍ରଭୃତି ସକଳ କାର୍ଯ୍ୟସାର, ଘରେ ପିଲାଙ୍କୁ ଜଗି ରଖିବା ପାଇଁ ଜଣେ ଦାସୀକି କହିଥାନ୍ତି, ସେ ରାଜଗୁରୁଙ୍କ ଅନୁପସ୍ଥିତି ସମୟରେ ପିଲାଙ୍କୁ ଜଗି, ଖେଳ, କୌତୁକରେ ହସାଇ ରଖାଇ ରଖିଥାଏ । ସମୟେ ସମୟେ ପିଲାଙ୍କୁ ଶୁଆଇ ଦେଇ ଗୃହିଣୀ ବସିଥାଏ, ରାଜଗୁରୁ ଗୃହକୁ ଆସିବାଯାଏ ।

ଏହିପରି ବୁଢ଼ୀ ଦାସୀର ପରିପାଳନାରେ ପିଲାଟିମାନେ ଦୁଃଖ କଷ୍ଟ ସେତେ କିଛି ନ ପାଇ, ଦିନ କାଟୁଥାନ୍ତି । ରାଜଗୁରୁ ପିଲାଟିମାନଙ୍କ ଉପରେ ବିଶେଷ ଆଦର, ବାତ୍ସଲ୍ୟ ପ୍ରକାଶ କଲେ ମଧ୍ୟ ଜନନୀ ପରି ପିଲାଙ୍କ ଅର୍ଦ୍ଦଳିରେ ସମୟେ ସମୟେ ଟିକିଏ ଦଦ୍‌ଦାର ହୋଇ ମୁହଁ ଶୁଖାଇ ପିଲମାନଙ୍କୁ ପ୍ରବୋଧନା ଦଅନ୍ତି । ପିଲାଙ୍କ କଥାତ ଜଗତସାରା ଯାକରେ ଓଲଟା, ସେମାନେ ଯାହା ଜୋରକରିବେ ତାହାତ ହେଲା ଯାଏ କଣ୍ଟା । ନୋହିଲେ ଆଉ ରକ୍ଷା ନାହିଁ । ଏକାପରି ବସି ରଡ଼ ବୋବାଳି କରିବେ । ଆଉ ହଜାରେ ପ୍ରକାର ସୁନ୍ଦର ପଦାର୍ଥ ଆଣି ତାଙ୍କ ପାଖରେ ରଖିଲେ ମଧ୍ୟ ସେଥିରେ ଦୃଷ୍ଟି ଦେବେନାହିଁ କି କାନ୍ଦ ବନ୍ଦ କରିବେ ନାହିଁ । ସେ କହିଥିବା କଥାରେ ହଟିରଖି ଧକ୍ ଧକ୍ ହୋଇ ଓଠ ଲମ୍ବାଇ ଆହୁରି ବଡ଼ ପାଟିକରି କାନ୍ଦ ବସିବେ । ଏହାତ ପିଲାଙ୍କର ସ୍ୱାଭାବିକ ଧର୍ମ କହିଲେ ଚଳେ । ପ୍ରତ୍ୟେକ ଗୃହରେ ଏହାତ ଅନୁଭବ

କରିଥିବା କଥା; ଏଥିରେ ବା ସନ୍ଦେହ କରିବାର କ'ଣ ଅଛି । ମାତୃହୀନ ଛେଉଣ୍ଡ ପିଲଙ୍କୁ ପାଳିବା ପିତାଙ୍କପକ୍ଷେ ଅତ୍ୟନ୍ତ କଷ୍ଟକର । ଜନନୀ ପିଲମାନଙ୍କର ହଠରୁ ରକ୍ଷା ପାଇବା ପାଇଁ ନାନା କଥା କହେ, କୌଣସି କଥାରେ ପିଲର ମନ ଭୁଲିଗଲେତ ଭଲକଥା ନୋହିଲେ ଅନ୍ୟ ଉପାୟ ନଦେଖି ଶେଷରେ ସ୍ତନ୍ୟ ଦେଇ ବୋଧେଇ ତାଙ୍କୁ ଶୁଆଇ ଦିଏ । ପିଲେ ନିଦରୁ ଉଠିଲା ବେଳକୁ ଆଉ ସେ ପୂର୍ବ କଥା ତାଙ୍କର କିଛିହେଲେ ମନେନଥାଏ, ପୁଣି ହସି ମାତି ଖେଳି ଆନନ୍ଦରେ ରହନ୍ତି । ଘରୁ ପଦାକୁ ଯାଇ ଖେଳି, ମାତି ଆସିଲେ, ଜନକ ଜନନୀଙ୍କର ଆଉ ଚିନ୍ତା ନଥାଏ । ସେ ନିଜ ନିଜର ଗୃହ କାର୍ଯ୍ୟ ଗୁଡ଼ିକ ସୁରୁଖୁରୁରେ ଚଳାଇ ଦେଇ କହନ୍ତି । କିନ୍ତୁ ଅବୋଧ ବାଳକ ବାଳିକା, ସେ କାହୁଁ ସୁଖ, ଦୁଃଖ, ଥିବା ନଥିବା, ଭଲ, ମନ୍ଦ, ସମୟ, ଅସମୟ, ପର, ଆପଣା, ମିଳିବା, ନ ମିଳିବା କଥା ଜାଣିବ, ଯାହା ସେଇ ଗୋଟିଏ କଥା ଏକାପରି ଧରି ବସିଥିବ । ତାର ସେ କାନ୍ଦ କିଏ କମିଛି ବା ବନ୍ଦ କରି ଭୁଲି କରି ପାରିବ ? ପିଲଙ୍କ ଅମାୟିକ ଭାବପ୍ରବଣତାରେ ଯେପରି ସମୟ ସମୟରେ ଅଚିନ୍ତନୀୟ ବ୍ରାହ୍ମାନନ୍ଦ ମିଳେ, ସେହିପରି ସମୟରେ ଅନିର୍ବଚନୀୟ ମନୋବେଦନା ମଧ୍ୟ ଅନୁଭୂତ ହୋଇଥାଏ । ଅବସ୍ଥାର ପରିବର୍ତ୍ତନରେ କେବଳ ସେ ଦୁଃଖର ଟିକିଏ ଉପଶମ ହୁଏ । ଘଟନା ଚକ୍ରରେ ପଡ଼ି ପିଲଙ୍କର ମନ ନାନା ଦିଗରେ ଭ୍ରମିଯିବାରୁ ସେ ଆଉ ପିତା ମାତାଙ୍କୁ ହଟହଟା କରନ୍ତି ନାହିଁ । ସଙ୍ଗଗୁରୁ ଏଡ଼େ ବଡ଼ ପଣ୍ଡିତ ହେଲେ କଣ ହେଲା, ପିଲଙ୍କୁ ବୁଝାଇବାର ଯେ, କେଡ଼େ କଷ୍ଟ ତାହା ସେ ଜାଣି ନଥିଲେ । ପିଲଙ୍କ ଆଗରେ ତ ଆଉ ବେଦ, ଉପନିଷଦ, ପୁରାଣ, ବା କାବ୍ୟର ଶ୍ଳୋକ ଅର୍ଥ ଚଳିବ ନାହିଁ । ଏପରି ଗୋଟିଏ ଗୋଟିଏ ପିଲା

ଅଛନ୍ତି, ଯେଉଁମାନେ ନାନା ପ୍ରକାର ଖେଳନା ସାମଗ୍ରୀ ଦେଖିଲେ, ହଟ୍ଟ କରିଥିବା କଥା ଭୁଲିଯାଇ ହସି ଖେଳି ବସନ୍ତି । ଅଭ କେତେକ ନ ଛାଡ଼ବନ୍ଧା ହୋଇ ନିଜର ରୋଦନ ବଳରେ ତାହା ପାଇବାପାଇଁ ହଟି କରନ୍ତି ।

ରାଜଗୁରୁଙ୍କର ତ ଗୋଟାଏ ବୋଲି ପୁଅ, ସେ ପୁଣି ହୋଇଚ, ମା'ଛେଉଣ୍ଡ, ଅତଏବ ତାଠାରେ ଅତିମାତ୍ରାରେ ସ୍ନେହ ରହିବା କଥା ସ୍ୱାଭାବିକ । ରାଜଗୁରୁ ଦଣ୍ଡେ ପିଲାଟିକୁ ନ ଦେଖିଲେ ବଣା ହୋଇଯାନ୍ତି, କୌଣସି କାର୍ଯ୍ୟ କରିବାକୁ ତାଙ୍କର ମନ ଆଉ ବଳେନାହିଁ । ପିଲା ମୋର କୁଆଡ଼େ ଗଲା ବୋଲି ବାଉଳା ହୋଇ ଘର ଭିତରକୁ ଧାଇଁ ଆସନ୍ତି । ଝିଅ ଯୋଡ଼ିକ ସ୍ନେହ ଭାଇଟିକୁ ଖେଳୁଥିବା ଦେଖିଦେଲେ ତାଙ୍କ ମନ ଆନନ୍ଦିତ । ଦଣ୍ଡେ ମୁହୂର୍ତ୍ତେ ପିଲାଙ୍କ ପାଖେ ବସି ସେମାନଙ୍କ ସହ କୌତୁକିଆ କଥାବାର୍ତ୍ତା କରି ପୁଣି ଅନ୍ୟାନ୍ୟ କାର୍ଯ୍ୟ କରିବାକୁ ପ୍ରୟାସୀ ହୋଇଯାନ୍ତି । ଦିନେ ସକାଳୁ ଉଠି ରାଜଗୁରୁ ପିଣ୍ଡାଟି ଉପରେ ବସି "ପାହାନ୍ତି ସ୍ମରଣ" କରୁଚନ୍ତି ।

କଥା ବର୍ତ୍ତମାନ ତ ଆଉ କୌଣସି ଗ୍ରାମରେ ବୟୋବୃଦ୍ଧମାନେ ଆଚରଣ କରୁଥିବାର ଦେଖାଯାଉ ନାହିଁ । ନାଗରିକମାନେ ଅବା ସେ ନାମ କାହିଁକି କରିବେ ?

ରାଜଗୁରୁ ବୋଲୁଥାନ୍ତି ପ୍ରଥମେ ଗୁରୁସ୍ମରଣ—

(୧) "ଗୁରୁର୍ବ୍ରହ୍ମା ଗୁରୁର୍ବିଷ୍ଣୁ ଗୁରୁର୍ଦେବୋ ମହେଶ୍ୱରଃ ।
ତତ୍ପଦଂ ଦର୍ଶିତଂ ଯେନ ତସ୍ମୈ ଶ୍ରୀ ଗୁରବେ ନମଃ ॥

(୨) ଅଖଣ୍ଡ ମଣ୍ଡଳାକାରଂ ବ୍ୟାପ୍ତଂ ଯେନ ଚରାଚରଂ ।
ତତ୍ପଦଂ ଦର୍ଶିତଂ ଯେନ ତସ୍ମୈ ଶ୍ରୀ ଗୁରବେ ନମଃ ॥

(୩) ପୁଣ୍ୟଶ୍ଲୋକୋ ନଳୋରାଜା ପୁଣ୍ୟଶ୍ଲୋକୋ ଯୁଧିଷ୍ଠିରଃ ।
ପୁଣ୍ୟଶ୍ଲୋକାଚ ବୈଦେହୀ ପୁଣ୍ୟଶ୍ଲୋକୋ ଜନାର୍ଦ୍ଦନଃ ॥

୪ । ଅପଦାମପହର୍ତ୍ତାରଂ ଦାତାରଂ ସର୍ବସମ୍ପଦାଂ ।
ଲୋକାଭିରାମଂ ଶ୍ରୀରାମଂ ଭୂୟୋଭୂୟୋନମାମ୍ୟହଂ । ୧ ।

୫ । ଅମନ୍ତ୍ର ଅକ୍ଷର ପୃଷ୍ଠ ଭ୍ରମନ୍ତ୍ର ମୁଖରାକ୍ରାନ୍ତଂ ।
ଦୁଃଖିତବେଲୁ ଦୁଃଖଂ ଦୁର୍ଗାଚରଣ ପଙ୍କଜଂ ।

୬ । ଶୂଳଂ ଶୂଳୀ ବଜ୍ରମାଦାୟ ବଜ୍ରୀ ପାଶଂପାଶୀ ଚକ୍ରମାଦାୟ ଚକ୍ରୀ ।
ଧାବନ୍ତ୍ୟେତେ ପାର୍ଶ୍ୱତଃ ପୃଷ୍ଠତଶ୍ଚ ଦୁର୍ଗା ଦୁର୍ଗାବାଦନେ।
ରକ୍ଷଣାୟ ।

ଏହିପରି ଗୁରୁ ଓ ଇଷ୍ଟଦେବତା ଦୁର୍ଗାଙ୍କ ନାମ ସ୍ମରଣ କରି, ପିଣ୍ଡା କୋଣରେ ଲେଗୁଡ଼ୋଇ ମୁଣ୍ଡପୋଡ଼ ବସିଛନ୍ତି, ଶୀତଦିନ ପୁଷମାସ ପାହାନ୍ତିଆ ସମୟ ତାଙ୍କର ଗୁଡ଼ାକ ଘଡ଼ଷିଯାକ ବନ୍ଦ ବନ୍ଦ ଚନ୍ଦ୍ରକଣରୁ ବୃଷ୍ଟି ହୋଇ ନଡ଼ିଆଗଛର ବାଙ୍ଗଆଗୁଡ଼ାକରୁ, ଦାଣ୍ଡରେ ଘାସଗୁଡ଼ିରେ ଟପ୍ ଟପ୍ ହୋଇ ପଡ଼ି ସବୁ ଭିଜେଇଦେଇଛି, ଏବେତ ଶୀତଦିନ, ସେଥିରେ ନଡ଼ିଆଗଛର ଛାଇ ସୂର୍ଯ୍ୟ କର ପ୍ରବେଶ କରୁନାହିଁ. ପୁଣି ଏ ତାଙ୍କର ବଡ଼ପଣ, ଗ୍ରାମର ପିଲାମାନେ ଶୁଖିଲ ନଡ଼ିଆ ପତ୍ର ବା କୁଟା ଗୁଡ଼ାଏ ସଂଗ୍ରହ କରି ସ୍ଥାନେ ସ୍ଥାନେ ଦାଣ୍ଡରେ ନିଆଁ ଜାଳି ବସନ୍ତି । ବୟସ୍କ ଲୋକମାନେ ମଧ୍ୟ ପିଣ୍ଡାମାନଙ୍କରୁ ଓହ୍ଲାଇ ଆସି ସେଠାରେ ମଣ୍ଡଳାକାର ହୋଇ ବସି ନାନା ପ୍ରକାର ସାଂସାରିକ କଥାରେ ବ୍ୟାପୃତ ରହନ୍ତି । ପିଲାଏ ସେଠାରୁ ଆନନ୍ଦ ଭରେ "ଋଷିମୁଷି ନାରଦ ମୁଷି, କି ଅଳଚେଲ ମାଇଲ ବାଣ, ଅଟିକା ଫୁଟେଇ ତେଲୁଣୀ କାଣ, ଯିଏ ନ ଆଣେ କୁଟାଭରଣ, ତା'ର ପିଠିରେ ବାଥ ଭରଣ, ବାଥଗଲା ଝୁସାଝୁସି, ଡାହାଣୀ ଖାଇଲା, ବୁଲୁରେ ବସି" ଏହିପରି କୌତୁକ ଶପଥ ବା ପ୍ରମାଣ କରି ଯେ ଯୁଆଡ଼େ ଇଚ୍ଛା ଧାଇଁଯାଇ, କାଠି,

ଲୁହା, ଜଣ ବୋହୂ ଆଣି ସେ ସ୍ଥାନରେ ଜମାକରି ପୁଣି ଫେରନ୍ତି । ଏହିପରି ବେଳ ଦୁଇ ଘଡ଼ି ହେବାଯାଏ, ନିଅଁ ପୁଅଁ ହୁଏ, ପରେ ପ୍ରାତଃ କୃତ୍ୟାଦି କରିବା ପାଇଁ ବୟସ୍କମାନେ ଜଣ ଜଣ ହୋଇ ଉଠିଯାନ୍ତି । ଏହି ନିଅଁ ପୁଅଁ କାର୍ଯ୍ୟଟିରେ ଯୋଗଦେବା ଅଭିପ୍ରାୟରେ ଶୟନଗୃହରୁ ପିଣ୍ଡାରୁ ପାବଚ୍ଛକୁ ଓହ୍ଲାଇ ଆସୁଛନ୍ତି ନିଜ ପ୍ରାଣର ଅମୂଲ୍ୟ ସମ୍ପଦ ସ୍ୱରୂପ ବାଳକଟି ନିଦରୁ ଉଠି ରଡ଼ିଛାଡ଼ି କାନ୍ଦି ଉଠିଲା, ସଙ୍ଗେ ସଙ୍ଗେ ଯୋଡ଼କଯାକ ଝିଅ କାନ୍ଦୁରା ଭାଇଟିକି କାଖେଇ କୁଣ୍ଢେଇ କେତେ ପ୍ରକାରେ ପ୍ରଲୋଭନ କଥା କହିଲେ ମଧ୍ୟ ସେ ପିଲା ତୁନି ନୋହିବାରୁ ଧାଇଁ ଆସି ସାନ ଝିଅଟି ନନା ନନା ବୋଲି ଦାଣ୍ଡଦୁଆରେ ଠିଆ ହୋଇ ଡାକ ପକାଇଲା । ନନା ଆଉ ନିଅଁ ପୁଇଁବାକୁ ଯିବେ କଣ, ପାବଚ୍ଛରୁ ଫେରିଆସି, ପୁଅକୁ କାଖେଇ ପକାଇ ନାନା ଆଡ଼ୁ ନାନା କଥା କହି ବୋଧେଇ ବସିଲେ । ଅବୋଧ ବାଳକ କେଉଁ ପ୍ରବୋଧନା ଶୁଣୁଚି ? ସେ ଏକାପରି ସ୍ୱରାଧରି କାନ୍ଦିଲଗିଚି । ପିତା ପିଲାଟିର କାନ୍ଦୁଣୀ ବନ୍ଦ କରି ନପାରି ବ୍ୟଥିତ ମନରେ ପିଲାକୁ ଧରି ଦାଣ୍ଡକୁ ବାହାରି ଆସିଲେ । ଉଦ୍ଦେଶ୍ୟ ହେଉଚି, ଅନ୍ୟ ପିଲାଙ୍କର ଖେଳ, କଥାବାର୍ତ୍ତା ଦେଖି ଶୁଣି ପିଲାର ମନ ବଦଳିଯିବ । ସେତେବେଳକୁ ନିଜର ପୁଅଟି କେତେଗୁଡ଼ିଏ କଥା କହିବାର ଶିଖିଗଲାଣି, ପଣ୍ଡିତଙ୍କର ମନୋଗତଭାବ ଏହି ଯେ, ନିଷ୍ଟପୁ ପିଲାଙ୍କ କଥାରେ ପୁଅର ମନ ଭୁଲିଯିବ, ଆଉ ସେ କାନ୍ଦିବନାହିଁ । ଏହି ଅଭିପ୍ରାୟରେ ଦାଣ୍ଡକୁ ନେଲେ । ଗ୍ରାମର ପିଲାମାନେ ଗୋଟିଏ ସ୍ଥାନରେ ଜୁଟିହୋଇ ନଡ଼ିଆ ଗଛରୁ ଝଡ଼ି ପଡ଼ିଥିବା ଗୋଟୋମା ଗୁଡ଼ିଏ ଗୋଟାଇଆଣି, ନଡ଼ିଆ ବାଙ୍ଗୁଆରୁ ବରଡ଼ା ଉଁଛୁ, ଖପରିରୁ ଖଡ଼ିକା ବାହାର କରି ଗୋଟୋମାରେ ଗୁଞ୍ଜି ସେହି ଖଡ଼ିକାକୁ ବୁଲାଇ ବୁଲାଇ ଜୋରରେ

ଉପରକୁ ଫିଙ୍ଗି "ଓ଼ରେ, ଓ," ବୋଲି କହୁ ମୋ'ହାଇଲା ଭେକେତେଦୂର ଗଲ୍ପ ବୋଲି ଉଦ୍ଭଟଭାବେ ଡେଇଁ ଉକୁସି ଖେଳୁଚନ୍ତି । ପଣ୍ଡିତେ ଅଙ୍ଗୁଠି ହଲାଇ ପିଲାକୁ ଏହା ସବୁ ଦେଖାଇ ଦଉଡ଼କାଳ ସେଠାରେ ରହି ପିଲାର କାହାଣୀ ବନ୍ଦହେବାରୁ ଘରକୁ ଫେରି ଅଧ ଦେଖନ୍ତି ତ ବେଳ ଆସି ପହରକୁ ବଳି ପଡ଼ିଲାଣି । ସ୍ନାନାଦି ନିତ୍ୟକର୍ମ ସବୁଗୁଡ଼ାକ ରହିଯାଇଛି, ପଣ୍ଡିତଙ୍କ ସ୍ୱଭାବ ତ, କୌଣସି କର୍ମ ଛାଡ଼ିଲେ ମନରେ ଆଉ ଦାନ୍ତୁଟିଯାକ ଶାନ୍ତି ରହିବ ନାହିଁ, କଣ କରିବେ । ଚଞ୍ଚଳ ପିଲାଙ୍କର ଖାଦ୍ୟପେୟର ବ୍ୟବସ୍ଥା କରିଦେଇ, ସ୍ନାନାର୍ଥେ ଡାଲି, ଗାମୁଛା ଧରି ପୁଷ୍କରିଣୀ ଅଭିମୁଖରେ ବାହାରିଗଲେ ହେଲେ ।

ଦୈବଯୋଗେ ସେ ଦିନ ରଜାଘରେ ଗୋଟିଏ ବିଶିଷ୍ଟ ଅନୁଷ୍ଠାନହେତୁ ରାଜଗୁରୁଙ୍କର ଉପସ୍ଥିତି ଏକାନ୍ତ ପ୍ରୟୋଜନୀୟ ହୋଇ ପଡ଼ିଛି । ସ୍ନାନରୁ ଫେରି ଆସି ରାଜଗୁରୁ ନିତ୍ୟକର୍ମରେ ବସିଚନ୍ତି, ରାଜକର୍ମଚାରୀ ତୁହା ତୁହା କରି ଡାକି ଆସି ଗଲେଣି । କରିବେ କଣ । ଏପରି ଅବସ୍ଥାରେ ଅଧାକର୍ମ କରି ଯାଉଚନ୍ତି କିମିତି ? କଷ୍ଟମନରେ କର୍ମାନ୍ତେ ଭୋଜନରେ ବସି ବାଳକଟିକି ଭୋଜନ ସମୟେ ଡାକି କହିଲେ, ଦେଖ ଟୋକା ! ମୋ ହାତରେ ଡାଲି ଗୋଳାହେବା ଭାତ ଗୁଣ୍ଡାଟିଏ ଅଛି, ମୁଁ ଆଖି ବୁଜିଚି, କଏ ଚୋର ପରି ଆସି ତୁଣ୍ଡରେ ଗଣ୍ଡିଏ ଧରି ନେଇଯିବ ଦେଖିବା ।

ପିତାଙ୍କର ଏକଥା ଶୁଣି ଶିଶୁଟି କାନ୍ଦୁକୁ ପିଠିଲଗାଇ ଅଡ଼ିକି କହିଲା, "ଇଃ ଭାତମେଣ୍ଡ ଗୁହୁଁଚ, ମୁଁ କଣ ଖାଇବି କି ! କେବେହେ ପିଅଣିଅଁନା, ଆଖି ବୁଜିଚ ବୋଲି କହୁ ଗୁହୁଁଚନ୍ତି

ଏହା ଶୁଣିବାମାତ୍ରେ ପିଲା ବାମହସ୍ତରେ ଯୋଡ଼କପାଳ ଅଙ୍ଗୀ ବୃକ୍ଷ ପୁଣି ଗୃଣ୍ଠାଟି ଦେଖାଇଲେ, ଆଜ ଗୋଟିଏ କଥାରେ ହଠଧରି କହିଲା, ନାଇଁପା, ମତେ ଗୋଟିଏ ବରଡ଼ା ପେଟେହେଁକାଳି ଅଟିଦଅ, ନଇଲେ ମୁଁ ଖାଇବି ନାହିଁ । ପୁଣି ପିଲା ରାଜଗୁରୁ ଖାଇବେ କଣ, ହସି ହସି କହିଲେ ଯେ, ଆରେ ଆଗ ଭାତ ଖାଇ ପକା, ପଛେ ଅଟେଣାଇବା, ବରଡା ଆଣି ତୋ ପାଇଁ ପେଟେହେଁକାଳି, ପଦ୍ମ, ଶୁଆ, ସବୁ ତିଆର କରି ଦେବି । ଆଗ ଖାଇପକା ମ । ଏହିପରି ତେତେ କଣ ହଠା ଲଗାଇ, ପୁଣି ଏ ଖାଇବାରୁ ରାଜଗୁରୁ ଭୋଜନ କରି ଉଠି ଆଚମନାନ୍ତେ ରଙ୍ଗାଘରକୁ ଯିବେ କଣ, ଆଗ ପିଲ ପାଇଁ ବରଡ଼ା ଆଣି କହିବା ଅନୁସାରେ ସବୁ ତିଆର କରି ପିଲହାତରେ ଦେଇ ବୋଧାଇଦେଲେ । ପିଲାଟି ଉଉଣୀ ସଙ୍ଗେ ଖେଳି ବସିଲା । ରାଜଗୁରୁ ଶୁଭ୍ର ବସ୍ତ୍ର ପିନ୍ଧି, ଉତ୍ତରୀୟ, ଗାମୁଛାଧରି ରାଜଗୃହ ଅଭିମୁଖେ ବାହାରିଲାବେଳକୁ ସମ୍ମୁଖ ତଳିପହରି, ରାଜା ଦେଖିବାମାତ୍ରେ ନମସ୍କାର କରି ଟିକିଏ ଉରୁଷ୍ଟ ସ୍ୱରରେ ରାଜଗୁରୁଙ୍କୁ ଗୃହିଁ କହିଲେ—କି ରାଜଗୁରୁ ମହାଶୟ ! ଆପଣଙ୍କୁ ଡାକିବାର ଲୋକ ପଠାଇ ଚଞ୍ଚଳ ଆସିଲେ ଗୋଟାଏ ଅତ୍ୟାବଶ୍ୟକ କଥାର ନିଷ୍ପତ୍ତି କରିବା ବୋଲି ଡାକାଇଲି ଯେ, ଏତେବେଳକୁ ସମୟ ମିଳିଲା ପରା ! ଯେଉଁଦିନ ମୋର ଆବଶ୍ୟକ ଥିବ, ମୁଁ ଡକାଇ ପଠାଇଲେ ଆପଣ ଏହିପରି ବିଳମ୍ବ କରୁଛନ୍ତି । ଏହି ଅଳ୍ପ କେତେଦିନ ହେଲା ଏପରି ଦେଖା ଯାଉଛି । ଯଦି ସମୟ ନ ମିଳୁଛି, ତେବେ ଆପଣ ନାହିଁ କରି ଦେଉଥାନ୍ତୁ ।

ରାଜାଙ୍କ ମୁଖରୁ ଏପରି ଶୁଣି ରାଜଗୁରୁ ଟିକିଏ ବିଚଳିତ ହୋଇ କହିଲେ, ମହାରାଜ ! ମାତ୍ର ଛୋଟଣ୍ଡ ପିଲାଟିର ଅଯଥା ଅଡୁଆ କଥାରେ ମୁଁ ବ୍ୟତିବ୍ୟସ୍ତ ହୋଇ ତାକୁ ନାନାପ୍ରକାର

ବୋଧୋଇ ବୋଧୋଇ ଅଜ ଏତେ ଲମ୍ବହେଲ । ଆଉ କୌଣସି ଉପାୟରେ ତାର କାନ୍ଦଣା ବନ୍ଦ କରି ପାରିଲି ନାହିଁ ।

ରାଜା ପଣ୍ଡିତଙ୍କ ମୁଖରୁ ଏତକ ଶୁଣି ହେଇ ଗୋଟାଏ ଅଟ୍ଟହାସ କରି କହିଲେ, ଆପଣଙ୍କ ସଦୃଶ ସର୍ବଦର୍ଶୀ ପଣ୍ଡିତ ଗୋଟିଏ ଘର ପିଲାଟାକୁ ବୋଧ କରି ନ ପାରିବା କଥା କହିଲେ ଯେ, ତାହାଶୁଣି ମତେ ବଡ଼ ହସ ଲାଗୁଛି ।

ତା' ପରେ ରାଜଗୁରୁ କହିଲେ—ମହାରାଜ ! ପିଲମାନେ କେତେବେଳେ କଣ ନମିଳିବା କଥାରେ ହଠି ବସି କାନ୍ଦିବେ, କେତେ ବୋଧେଇଲେ ମଧ୍ୟ ଶୁଣିବେ ନାହିଁ । ସେଇ ଗୋଟିଏ କଥା ଧରି ବସିବେ । ମୁଁ ସେଥି ପାଇଁ ଏତେବେଳ ଯାଏଁ ରହିଗଲି ।

ରାଜା ସହାସ ବଦନରେ କହିଲେ ଯେ, ଆପଣ ଏଇ ମୁହୂର୍ତ୍ତରେ ଦଶଟି ପିଲ ଅଣିଦିଅନ୍ତୁ, ଦେଖିବେ, ମୁଁ ସମସ୍ତଙ୍କୁ କ୍ଷଣକେ ସନ୍ତୁଷ୍ଟ କରାଇ ଦେବି । "କିନ୍ତୁ ରାଜଗୁରୁ ଦଶୋଟି ପିଲ ଅଣିବାକୁ ଯିବେ କାହିଁ କି ? ନିଜେ ପିଲଙ୍କ ପରି କଥା କହି ପିଲ ହୋଇ ଆପଣଙ୍କୁ ହଟା କରିବି, ଅପଣ ମୋର ଅଭିଭାବକ ମନେକରି ମତେ ଯେ କୌଣସି ପ୍ରକାର ବୋଧ କରି ଦେଇ ପାରିଲେ ଯଥାର୍ଥ ହେଲା" । ରାଜଗୁରୁଙ୍କର ଏପରି କଥା ଶୁଣି,ରାଜା ହଠ କହି ପକାଇଲେ, ଅଚ୍ଛା, ତେବେ ଅପଣ ମନେ କରନ୍ତୁ, ନିଜକୁ,ଗୋଟିଏ ପିଲାବୋଲି, ମୁଁ ଯେ ଆପଣଙ୍କର ଅଭିଭାବକ ବୋଲି ମନେ କରୁଛି । କହନ୍ତୁ, ଅପଣଙ୍କର ଏବେ କି ଦରକାର ?

ରାଜଗୁରୁ ହସିଦେଇ କହିଲେ ଯେ, ତାହା ହେଲେ ଅପଣ ବର୍ତ୍ତମାନ ମୋର ଅଭିଭାବକ, ଏବେ ଅପଣଙ୍କ ଅଗରେ ମୋର ବକ୍ତବ୍ୟ ପ୍ରକାଶ କରୁଛି, ଶୁଣନ୍ତୁ । ରାଜା ସ୍ୱୀକୃତ ହୁଅନ୍ତେ,

ରାଜଗୁରୁ କହିଲେ "ହଁ ମହାରାଜ ! ନାଉଁ ଯା" କହି, ନିଜ ଅଣ୍ଟାରେ ଖୋସି ଥିବା ନାଗ ଦାନଟିରୁ ଚରିତ୍ରଟି ବାହାର କରି ଦେଇ ଦେଖାଇ ବୋଇଲେ ଯେ, "ମହାରାଜ ! ଏ ଦାନଟି ଭିତରେ ରାମଙ୍କର ସେ ହାତୀଟିକୁ ଭରତି କରି ଦିଅନ୍ତୁ" । ଏତକ ମାନେ ରାଜା ନାନା ପ୍ରଲୋଭନ ପଦାର୍ଥ ଆଣି ଦେଖାଇଲେ । ରାଜଗୁରୁ ସେହି ଗୋଟିଏ କଥା ଧରି ବସିଥାନ୍ତି । ରାଜା ଶେଷରେ ବିରକ୍ତ ହୋଇ କହିଲେ, ରାଜଗୁରୁ ! ଏକଣ ! ଗୋଟାଏ ଅସମ୍ଭବ କଥା ଧରି ବସୁଚ ? ତାପରେ ରାଜଗୁରୁ ଉତ୍ତର ଦେଇ କହିଲେ, ମହାରାଜ ଛୋଟ ପିଲେ କେବେ ସମ୍ଭବ କଥା କହନ୍ତି କି ? ଏହିପରି ଅସମ୍ଭବ କଥାରେ ହଠି ବସିବାରୁ ମୋର ଆସିବାରେ ବିଳମ୍ବ ଘଟିଲା । ଏଇ ପ୍ରସଙ୍ଗରେ ଦୁହେଁ ପରମ ଆନନ୍ଦ ଉପଭୋଗ କଲେ ।

ଅତଏବ ବାଲ୍ୟ ସମୟରେ ବାଳକ ସନ୍ତାନଠାରେ କପଟତାର ସମ୍ପର୍କ ନ ଥିବାରୁ କେବଳ ଅନାବିଳ ଛଳନା ରହିତ "ସତ୍ୟ" ଜଗତରେ ବିଦ୍ୟମାନ ରହିଅଛି । ସୁତରାଂ କହାଯାଇ ଥାଏ ଯେ, ସତ୍ୟ ଶୂନ୍ୟ ହୋଇ ଜଗତ କେବେ ହେଲେ ନଥିଲା, ଏ ଘୋରତର କୁତ୍ସିତ ସଙ୍ଗକଳ କଳିଯୁଗରେ ମଧ୍ୟ ବାଳକମାନଙ୍କଠାରେ ତାହା ଦେଖାଯାଏ । ଏହିପରି ପାଞ୍ଚଆଠ ବର୍ଷ ପରମ ଆନନ୍ଦରେ ଜଞ୍ଜାଳ କିଛି ନଥାଇ କଟିଯାଏ ।



# କୈଶୋର

ଅବସ୍ଥା ମାନବର ବୋଲମାନ ତ ଆସେ ନାହିଁ, ସେ ପ୍ରକୃତି ଦ୍ୱାରା ପ୍ରେରିତ ହୋଇ ପ୍ରାଣୀ ବା ମାନବଠାରେ ଆପେ ଆସି ଦେଖାଦିଏ । ମାନବର ବାଲ୍ୟପରେ ଧୀରେ ଧୀରେ କୈଶୋର ଅବସ୍ଥା ଆସିଥାଏ । ଏହି ଅବସ୍ଥାରେ ବାଲକ ସାମାଜିକ ପିଲାଙ୍କ ମେଳରେ ବସି, ମାତି ଖେଳ ଦିନ କଟାଇବାକୁ ଆରମ୍ଭ କରେ ।

ପିତା ମାତା ବାଳକର ଉନ୍ନତି ପଣ ଦେଖି, ଚିନ୍ତିତ ହୋଇ, ତାର ଭବିଷ୍ୟତ ମଙ୍ଗଳମୟ ଓ ଶାନ୍ତିପ୍ରଦ କରିବା ପାଇଁ ଉପଯୁକ୍ତ ଶିକ୍ଷକ ହାତରେ ବାଳକଟିକୁ ସମର୍ପଣ କରି ଦେଇ ଶିକ୍ଷା ପ୍ରଦାନ କରନ୍ତି । ପ୍ରତିଦିନ ବିଦ୍ୟାଳୟର ନିର୍ଦ୍ଦିଷ୍ଟ ନିୟମରେ ସକଳ ବାଳକ ଉପସ୍ଥିତ ହୋଇ ଶିକ୍ଷକଙ୍କର ଶ୍ରେଣୀ ନିୟମରେ ଯେ, ଯାହାର ଶ୍ରେଣୀରେ ବସି ପଢ଼ନ୍ତି । ପ୍ରତିଦିନ ପାଠାନ୍ତରୁ ପିଲାମାନଙ୍କୁ ଧାଡ଼ି ଧାଡ଼ି କରି ଛିଡ଼ା କରାଇ ହାତ ଯୋଡ଼ି ଜନ୍ମଭୂମି ପ୍ରାର୍ଥନା ପଦ୍ୟଟିଏ ବୋଲିବା ପାଇଁ କହନ୍ତି । ଛାତ୍ରମାନେ ଗୁରୁଙ୍କ ଆଦେଶକ୍ରମେ ସେହିପରି କରନ୍ତି, ଓ ଗୁରୁଙ୍କ ମୁଖକୁ ଏକଲୟରେ ଚାହିଁରହିଥାନ୍ତି । ଗୁରୁଦେବ ପ୍ରଥମେ ଗୀତ ବୋଲିଲେ ପଛେ

ପିଲେ ବୋଲିବା ବୈଦିକ ନିୟମ, ଅନନ୍ତକାଳରୁ ଋଷିମ—ପଦମାନଙ୍କରେ ଚଳି ଆସୁଥିଲା ବୋଲି ସେହି ନିୟମର କ୍ରମ ଭାରତରେ କେବେହେଲେ ଭଙ୍ଗ କରାଯାଏ ନାହିଁ । ପିଲାଙ୍କ ଆଗରେ ଗୁରୁଦେବ ଛିଡ଼ାହୋଇ ଯୋଡ଼ହସ୍ତ କରି ଅବନତ ବଦନରେ ବୋଲନ୍ତି—

"ଜୟ ଗୋ ଭାରତ ଭୂମି ଜନନୀ ଆମ୍ଭର,
ସତ୍ତ୍ୱ, ରଜ, ତମୋଽପତ ପତାକା ତୋହର ।୧।
ତ୍ରିରଙ୍ଗ ରଞ୍ଜିତ ବାନା ଉଡ଼େ ଫରହର,
ଧର୍ମଧାମେ ଦେଖାଏ ସେ ମହିମା ତୋହର ।୨।
ସେ ପତାକା ତଳେ ଆମ୍ଭେ ସର୍ବେ ହୋଇ ଝୁଣ୍ଡ,
ଶାନ୍ତିଦେବୀ କୋଳେ ବସି ନୋହୁ ମା ପ୍ରଚଣ୍ଡ ।୩।
ଗଗନେ ମାରୁତ ସଙ୍ଗେ ଖେଳେ ତୋ' ପତାକା,
ଏ ଯୁଗକୁ ନିଷେଧୁଛି ଭଙ୍ଗିମାରେ ଏକା ।୪।
ତୋର ଆଶୀର୍ବାଦ ବଳେ ଆମ୍ଭେ ହେବୁ ଜ୍ଞାନୀ ।
କ୍ଷିତିରେ ଐକ୍ୟ ରଖିବୁ ସର୍ବେ ହୋଇ ମାନୀ ।୫।

ପ୍ରଥମେ ମାତୃପ୍ରଣତି । ତାପରେ ଗୁରୁଦେବମାନଙ୍କୁ ପ୍ରଣାମ କରାଯାଏ । ଅନନ୍ତର ଅଧ୍ୟୟନ କରିବାକୁ ହୁଏ, ଏହା ଆମ ଭାରତର ନିୟମ ବୋଲି ପିଲାଙ୍କୁ ଗୁରୁଦେବ ବୁଝାଇ ଦିଅନ୍ତି । ପରେ ପିଲାମାନେ ଗୁରୁ ପ୍ରଣତି ବୋଲନ୍ତି --

"ହରଂ ବନ୍ଦେ ହରିଂ ବନ୍ଦେ ଦକ୍ଷିଣାମୂର୍ତ୍ତିମବ୍ୟୟଂ ।
ଗୁରୁଂ ଗଣପତିଂ ବନ୍ଦେ ହୟଗ୍ରୀବ ସରସ୍ୱତୀଂ ।

ଏହିପରି ଗୁରୁ ପରଂପରାକୁ ଅଭିବାଦନ କରି ସେ ଯାହାର ପୂର୍ବ ପଠିତ ପାଠ ଅଭ୍ୟାସ କରି ବସନ୍ତି । ଏହି କୈଶୋର

ଅବସ୍ଥାଟିରେ ଅକ୍ଷର ପରିଚୟଠାରୁ ଆରମ୍ଭ କରି କ୍ରମଶଃ ପ୍ରାଦେଶିକ ମାତୃଭୂମି ସମ୍ବନ୍ଧୀୟ ଜ୍ଞାନର ଅଭିବୃଦ୍ଧି କରାଇ, ମାନବ ସମାଜଠାରୁ କୀଟ ପତଙ୍ଗାଦି କ୍ଷୁଦ୍ର ଜୀବ ପର୍ଯ୍ୟନ୍ତ ପ୍ରାଣିମାନଙ୍କ ସମ୍ବନ୍ଧେ ସାମାନ୍ୟରେ କିଛି କିଛି ପରିଚୟ ପ୍ରଦାନ କରାଯାଏ । ପିଲାମାନଙ୍କର ମେଧା ବା ସ୍ମୃତି ଶକ୍ତିର ପରୀକ୍ଷା କରିବା ପାଇଁ ଗୁରୁଦେବ ପଠିତ ଗ୍ରନ୍ଥଗୁଡ଼ିକରୁ ନେଇନେଇ ପ୍ରଶ୍ନ କରି ପ୍ରତିଦିନ ପଚାରୁଥାନ୍ତି । ପିଲାଙ୍କ ଉତ୍ତର ପ୍ରଦାନରେ ଶିକ୍ଷକ ଯଦି ତୃପ୍ତ ହୁଅନ୍ତି, ତେବେ ନୂତନ ସନ୍ଥ" ବା ପାଠ ପଢ଼ାନ୍ତି । ନୋହେଲେ ସେଦିନ ନୂତନ ପାଠ ବନ୍ଦ କରି ପଠିତ ବିଷୟରେ ପରିମାର୍ଜନା କେବଳ କରା-ଯାଇଥାଏ । ଏହିପରି କରିବା ଦ୍ୱାରା ପିଲମାନେ ପଠିତ ଗ୍ରନ୍ଥଗୁଡ଼ିକରେ କେବେହେଲେ ଅପାରଗତା ଦେଖାଇ ନ ଥାନ୍ତି । ଆଜିକାଲି-କାର ଶିକ୍ଷା କଥା ଦେଖିଲେ, ପୂର୍ବଧରଣର ଶିକ୍ଷାର "ଆକାଶ ପାତାଳଭେଦ" ଥିବା ଅନୁମିତ ହୁଏ । ଛାତ୍ର ଜ୍ଞାନୀ ହେଉ ବା ନ ହେଉ ଶିକ୍ଷକର ସେ ଦାୟିତ୍ୱ ନଥାଏ । ଯେ କୌଣସି ପ୍ରକାରେ ଅଧ୍ୟୟନ ଓ ଅଧ୍ୟାପନା ଏ ଯୁଗନୀତି ଅନୁସରଣରେ ନିର୍ବାହିତ ହୁଏ । ସୁତରାଂ ଶହକେ ଜଣେ ଦୁଇଜଣ ଅବା ମେଧାବୀ, ଜ୍ଞାନୀ ଦେଖା ଯାଇଥାନ୍ତି । ସାଧାରଣ କ୍ରିୟା କଳାପରେ ଆମ୍ଭେମାନେ ଅନୁଭବ କରୁଥାଉଁ ଯେ, ଗୃହଟିଏ ନିର୍ମାଣ କଲେ ପ୍ରଥମେ ତା'ର ପୁନାଦ ବା ଭିତ୍ତି ସୁଦୃଢ଼ କରି ନଥିଲେ ଗୃହଟି ଅଳ୍ପ ସମୟରେ ଭାଙ୍ଗିଯାଏ । ସେହିପରି "ପଲ୍ଲବଗ୍ରାହୀପାଣ୍ଡିତ୍ୟ" ଥିଲେ ସମୟରେ ତାହା ଉପଯୋଗୀ ହୋଇପାରେ ନା । ଏସ୍ଥଳରେ ଗୋଟିଏ ଶ୍ଳୋକ ଏହି ଉଦ୍ଦେଶ୍ୟରେ ଲିଖିତ ଅଛି । ଯଥା—

"ପୁସ୍ତକସ୍ଥାତୁ ଯାବିଦ୍ୟା ପରହସ୍ତଗତଂ ଧନଂ ।
କାର୍ଯ୍ୟକାଳେ ସମୁତ୍ପନ୍ନେ ନସାବିଦ୍ୟା ନତଦ୍ଧନଂ" ।୧।

ଏହି ଦୃଷ୍ଟିରୁ ପ୍ରାଥମିକ ଅଧ୍ୟାପନା ସୁଦୃଢ଼ କରାଇବା ନିମନ୍ତେ ଶିକ୍ଷକମାନେ ପ୍ରାଣପଣେ ଚେଷ୍ଟା କରି, ପିଲାଙ୍କର ଯେପରି ଗଦ୍ୟ ଗ୍ରନ୍ଥପାଠରେ ବିଷୟ ବା କଥାଗୁଡ଼ିକ ମନେରହିବ ଏବଂ ପଦ୍ୟ ପାଠରେ ପଦଗୁଡ଼ିକ କଣ୍ଠସ୍ଥ ହେବ ସେଥିରେ ବିଶେଷ ମନୋଯୋଗୀ ହୋଇଥାନ୍ତି ।

ପିଲାମାନଙ୍କ ସ୍ୱଭାବ ସୁଲଭ କଥା ଏହି ଯେ, ସେମାନେ ସବୁବେଳେ କାହାଣୀ ବା ଗଳ୍ପ ଶୁଣିବା ପାଇଁ ବିଶେଷ ଉତ୍କଣ୍ଠିତ ହୁଅନ୍ତି । ଅନୁଭବୀ ଶିକ୍ଷକ ଅଧ୍ୟାପନା ସମୟରେ ସିନା ଗମ୍ଭୀର ମୂର୍ତ୍ତି ଧରି ବସିଥାନ୍ତି, ସାୟଂକାଳରେ ପିଲାଙ୍କୁ ଡାକି ଆଣି ନିଜ ପାଖରେ ସମସ୍ତଙ୍କୁ ବସାଇ ସସ୍ମିତ ବଦନରେ ପ୍ରଭୃତି ନାନା ପ୍ରକାର ଉପଦେଶାତ୍ମକ କଥାର ଅବତାରଣା କରି, କେଉଁଦିନ ହାସ୍ୟ କେଉଁଦିନ ବା ଉପଦେଶ ଦେଇ ପିଲାଙ୍କୁ ହସାଇ ରଞ୍ଜାଇ କହୁଥାନ୍ତି । ଏହିପରି କରିବା ଦ୍ୱାରା ପିଲାଙ୍କ ମନ ପ୍ରସନ୍ନ ହୁଏ, ଶିକ୍ଷକଙ୍କସହ ସୌହାର୍ଦ୍ଦ୍ୟ ରଖି ବରାବର ହୋଇ ଆଦେଶ ପାଳନରେ ବ୍ରତୀ ହୁଅନ୍ତି । ଏହି କାରଣରୁ ଛାତ୍ରମାନଙ୍କୁ ପୂର୍ବାଚାର୍ଯ୍ୟମାନେ "ଅନ୍ତେବାସୀ" ଆଖ୍ୟା ଦେଇଛନ୍ତି । ଅତ୍ରହି ପିଲାଗୁଡ଼ିକ ସର୍ବଦା ଶିକ୍ଷକଙ୍କ ନିକଟରେ ରହୁଥିବାରୁ ବିଦ୍ୟାଳୟର ଯାବତୀୟ ଏବଂ ନିଜର କାର୍ଯ୍ୟ ଯାହାକି ଅତ୍ୟାବଶ୍ୟକୀୟ, ତାହା ସବୁ ସେହି ପିଲାଙ୍କ ଦ୍ୱାରା ନିର୍ବାହିତ କରାଯାଏ । ତଦ୍ଦ୍ୱାରା ଅବାଧ ପିଲାମଧ୍ୟ ଶିକ୍ଷକଙ୍କର ବୋଲ ବାଟ କରିବାରେ ଅବହେଳା ନ କରି ବାଧ୍ୟ ହୋଇଥାଏ ।

ଜନକ ଜନନୀ ପିଲାର ବୋଲବାଟ କରିବା ଦେଖି, ନିଜ ନିଜ ମନରେ ପରମ ସନ୍ତୋଷ ଲାଭ କରନ୍ତି । ପିଲାଟି ଦିନରୁ ତାକୁ 'କଲସୀ" ସଜେଇବା ଆଜିକାଲିପରି ଏଥିପୂର୍ବେ ନ ଥିଲା । ପିଲାଟି କଲସୀ ହେବା ଦ୍ୱାରା ପରିଶ୍ରମରହିତ ହୁଏ, ଏବଂ

ପିତାମାତା ଅତ୍ୟନ୍ତ ଖର୍ଚ୍ଚାନ୍ତ ହୁଅନ୍ତି । ପୁଣି ଅର୍ଥାଭାବ ହେତୁ ଜନକ ଜନନୀ ପୁତ୍ରର ପଢ଼ାରୁ କ୍ଷାନ୍ତ ହୁଅନ୍ତି । ସୁତରାଂ ସେ ଯେପରି ବାଳପଢ଼ା ପ୍ରତି ଦୃଷ୍ଟି ନ ଦେବ ସେଥିପ୍ରତି ଜନକ ଓ ଶିକ୍ଷକମାନେ ଯଥାସମ୍ଭବ ଦୃଷ୍ଟି ଦେଇ ଚାଲିଥାନ୍ତି ।

ଚଞ୍ଚଳମତି ବାଳକମାନଙ୍କର ମନକୁ ଯଥାଶକ୍ତି ସରଳବାଟକୁ ଆଣିବା ପାଇଁ ଶିକ୍ଷକ ଗୋଟିଏ ଗୋଟିଏ କାହାଣୀ ଗଳ୍ପାକାରେ କହନ୍ତି, ଉଦ୍ଦେଶ୍ୟ ସେମାନଙ୍କର ମନରେ ଧାରଣା ଜନ୍ମେ ଯେ, "ଦୋଷକାର୍ଯ୍ୟ କଲେ ଦଣ୍ଡ ପାଇବାକୁ ହୁଏ, ଏବଂ ଭଲକାର୍ଯ୍ୟ କଲେ, ଲୋକେ ଆନନ୍ଦରେ ପ୍ରଶଂସା କରନ୍ତି ।" ଶିକ୍ଷକଙ୍କ କଥା ବା ଗଳ୍ପରୁ ଏହା ସେ ବୁଝିନିଅନ୍ତି । ଏହା ହେଉଛି ଗଳ୍ପର ଉଦ୍ଦେଶ୍ୟ । ଏତିକିବେଳୁ ପିଲାଗୁଡ଼ିକର ତୀକ୍ଷ୍ଣବୁଦ୍ଧିର ସାମାନ୍ୟ ସୂଚନା ମିଳେ । ଗୋଟିଏ ପ୍ରବାଦ ଅଛି ଯେ, "ତୁଳସୀ ଦୁଇପତ୍ରରୁ ବାସେ, କଣ୍ଟୁଆତ ଦପତ୍ରରୁ କୁଣ୍ଡେଇ ହୁଏ ।" ସେହିପରି ବୁଦ୍ଧିମାନ୍ ପିଲାର ବିଦ୍ୟାବୁଦ୍ଧି ଯେପରି ତାର ପଠନ ପ୍ରଣାଳୀ, ଉଚ୍ଚାରଣ ପଟୁତା, ସ୍ମରଣ ଶକ୍ତି, ବାକ୍ପଟୁତା ଆଦିରୁ ଶିକ୍ଷକଙ୍କର ମନରେ ଧାରଣା ଜନ୍ମେ ଯେ, ଭବିଷ୍ୟତରେ ନିଶ୍ଚୟ ଦିନେ ଏ ବିଖ୍ୟାତନାମା ମନୀଷୀ ହେବ । ସୁତରାଂ ବାଳକର ବୟୋବୃଦ୍ଧି ସଙ୍ଗେ ସଙ୍ଗେ ଜ୍ଞାନର ତୀକ୍ଷ୍ଣତା ସମ୍ପାଦନାର୍ଥ ଶିକ୍ଷକ ମହାଶୟ ଅନ୍ତେବାସିର ବୟଃକ୍ରମବୃଦ୍ଧିରୁ ସୋପାନ ଆରୋହଣ ତୁଲ୍ୟ ଶିକ୍ଷାର ସୋପାନ କଠିନ କରିଦିଅନ୍ତି । ମନ୍ଦବୁଦ୍ଧି ସମ୍ପନ୍ନ ପିଲାମାନେ ଶକ୍ତି ଅନୁସାରେ କିଏ କୌ ସୋପାନ—ଶ୍ରେଣୀରେ ନିଜର ଅପାରଗତା ବା ଦୌର୍ବଲ୍ୟ ଦେଖାଇ ଶତ ଚେଷ୍ଟା କରି ମଧ୍ୟ କୃତକାର୍ଯ୍ୟ ହୋଇ ନପାରି ଯଥାଶକ୍ତି ଗାର୍ହସ୍ଥ୍ୟ ଜୀବନରେ ବା ସାମାଜିକ ସେବାରେ ନିଜ ନିଜକୁ

ନିଯୋଜିତ କରନ୍ତି । ମେଧାବୀ ବାଳକ ତ ନିଜର ଅତୁଳନୀୟ ମେଧା ଏବଂ ବାକ୍‌ପଟୁତା ଯୋଗେ ସର୍ବୋଚ୍ଚ ସୋପାନ ଅଧିରୋହଣ କରି ଶିକ୍ଷାର ସମାପନାନ୍ତେ ଜାଗତିକ ବିଭିନ୍ନ ବିଷୟରେ ମନୋନିବେଶ ପୂର୍ବକ ତୀକ୍ଷ୍ଣତର ଗବେଷଣା ଅମ୍ବୁଧିରେ ଏକବାରେକେ ନିଜକୁ ନିମଜ୍ଜିତ କରି ରଖେ । ସେହିଠାରେ ହିଁ ତାର ଅସାଧାରଣ ପ୍ରତିଭା ଶକ୍ତି ଦେଦୀପ୍ୟମାନ ହୋଇ ପ୍ରକାଶିତ ହୁଏ । ଲୋକସମାଜ ତା'ର ପ୍ରତିଭା ନିକଟରେ ଅକଳୁଷିତ ମନରେ ଅବନତମସ୍ତକ ହୁଏ । ଏହି ଭବିଷ୍ୟତକୁ ଆଖି ଆଗରେ ଥୋଇ ଶ୍ରେଣୀ ସୋପାନ ଅନୁଲକ୍ଷ୍ୟରେ ମନୀଷୀମାନେ ପାଠ୍ୟାବଳୀର କ୍ରମିକ ପରିବର୍ତ୍ତନ କରି ସମୟୋଚିତ ବ୍ୟବହାର ଦୃଷ୍ଟିରୁ ନିରୂପିତ ବା ନିର୍ଣ୍ଣିତ କରିଥାନ୍ତି । ଶ୍ରେଣୀ ବିଭାଗରେ ଯଦି ବାଳକ ଅକୃତ କାର୍ଯ୍ୟ ହୁଏ, ତେବେ ତାକୁ ତ ଆଉ ନିରକ୍ଷର ଆଖ୍ୟା ଦିଆଯାଇ ନ ପାରେ । ସେ ସାକ୍ଷର । ସାକ୍ଷର ଲୋକ ନିଷ୍କର୍ମା ହୋଇ କେବେ ତ ବସି ପାରିବ ନାହିଁ । ଯେ କୌଣସି ଜନହିତକର କାର୍ଯ୍ୟରେ ସେ ଲାଗି ପଡ଼ିବା ପାଇଁ ଚେଷ୍ଟା କରେ । ସ୍ୱଜାତୀୟ ବା ସମାଜୀୟ ସେହିମାନଙ୍କୁ ବିଭିନ୍ନ କାର୍ଯ୍ୟ ଯୋଗାଇଦେବା ପାଇଁ ମାର୍ଗ ପ୍ରଣୟନ କରିଥାଏ ।

ପିଲମାନେ ପଠଦବସ୍ଥାରେ ଏକବାରେକେ ଆଡ଼ମ୍ବର ଶୂନ୍ୟ ହୋଇ, ନିରଳସ ଭାବରେ ଅଭ୍ୟାସରତହେଲେ ଯାଇ ଅଧ୍ୟୟନରେ ସଫଳ ହୁଅନ୍ତି । ଯେ ଠିକ୍ ଏ ଅବହେଳାପ୍ରଯୁକ୍ତ, ଆଡ଼ମ୍ବରପ୍ରିୟ, ସେ ଆଉ ସହଜରେ ବିଦ୍ୟାକୁ ଅଯତ୍ନ କରିପାରେ ନାହିଁ । ପରିଣାମରେ ବ୍ୟର୍ଥମନୋରଥ ହୋଇ, ବିଦ୍ୟାଳୟରୁ ପ୍ରତ୍ୟାବର୍ତ୍ତନ କରେ । ଗୁରୁଶିକ୍ଷା ସମଭାବରେ ଶ୍ରେଣୀଗୃହରେ ବିତରିତ ହୋଇଥାଏ । ବୁଦ୍ଧି ଅନୁସାରେ ପିଲେ ତାହା ଯଥାଶକ୍ତି ଗ୍ରହଣ କରିଥାନ୍ତି । ଏଥିରେ କୌଣସି ପ୍ରକାରେ ପକ୍ଷପାତିତାର ସ୍ଥାନ

ଶିକ୍ଷକଙ୍କ ମାନସରେ ନ ଥାଏ, ଯଦି ରହେ, ତେବେ ସେ ଶିକ୍ଷକ ପଦବାଚ୍ୟ ନୁହେଁ । ସକଳ ସଦ୍‌ଗୁଣ ସମ୍ପନ୍ନ ଗୁରୁ ଉତ୍ତମ ଆଦର୍ଶ ସ୍ଥାନୀୟ ହୋଇଥିବା ଉଚିତ । ନୋହେଲେ "ସ୍ୱୟଂ ଅସିଦ୍ଧଃ କଥଂ ପରାନ୍ ସାଧୟତି" ନିଜେ ଗୁରୁ ଯଦି ବିଳାସପ୍ରିୟ ହୋଇ ଛାତ୍ରମାନଙ୍କ ଆଗରେ ମହାଡ଼ମ୍ବର ଦେଖାଇ ବସିବ, ତେବେ ପିଲାମାନେ ତାହା ଅନୁକରଣ ନ କରିବେ କି ? ଆଡ଼ମ୍ବର ପ୍ରିୟତା ଅଧ୍ୟୟନ ପଥକୁ କେବଳ ତୀକ୍ଷ୍ଣ କଣ୍ଟକିତ କରି ରଖିଦିଏ । କେତେକ ଛାତ୍ର ବୁଦ୍ଧିବଳରେ ପାଦତ୍ରାଣ ଦେଇ କଣ୍ଟକିତ ପଥରେ କଷ୍ଟ ସହ୍ୟକରି ଅଳ୍ପ ଦୂରମାତ୍ର ଅଗ୍ରସର ହୁଅନ୍ତି, ପାଦତ୍ରାଣହୀନ ଛାତ୍ର ଆଡ଼ମ୍ବରାନୁକୃତପ୍ରିୟ ହୋଇ ସେହି ଦୁର୍ଗମ ମାର୍ଗରେ ପଦେହେଲେ ଅଗ୍ରସର ନୋହି ଫେରିଆସେ ।

ସ୍ୱର୍ଗୀୟ ଗୋପବନ୍ଧୁ ପାଶ୍ଚାତ୍ୟ ଦେଶୀୟ ଶିକ୍ଷାଳୟର ବିଳାସପୂର୍ଣ୍ଣତା ଦେଖି ବିଚଳିତ ଓ ଅତୃପ୍ତମାନସରେ ଭାରତ ସନ୍ତାନପକ୍ଷେ ଏହା ଅନୁଚିତ ଓ ଅସଙ୍ଗତ ମନେ କରି, ଶତକଣ୍ଟାଳରେ କଣ୍ଟାଳୀ ହୋଇଥିଲେ ମଧ୍ୟ ସର୍ବତ୍ୟାଗବ୍ରତୀ ହୋଇ, ସତ୍ୟବାଦୀଠାରେ ଗୋଟିଏ ଆଦର୍ଶ ସ୍ଥାନୀୟ "ବନବିଦ୍ୟାଳୟ" ସ୍ଥାପନ କରି, ଉତ୍କଳରେ ତଥା ଭାରତରେ ଚିରସ୍ମରଣୀୟ ହୋଇ ଅଛନ୍ତି । ସେହି ଆଦର୍ଶ ଭବିଷ୍ୟତରେ କେବଳ ଉତ୍କଳ ବାସୀଙ୍କ ସମଗ୍ର ଭାରତବାସିଙ୍କ ମନେ ଅବଶ୍ୟ ଉଦ୍‌ବୁଦ୍ଧ କରିବ । ସେହି ଗୋପବନ୍ଧୁଙ୍କ ଅମରଆତ୍ମା ତାହାଙ୍କ ଅମର ଭୁବନରେ ଥାଇ ବସି ଭାରତକୁ ଗୃହିଁ ରହିଅଛନ୍ତି ।

ଅକ୍ଷର ପରିଚୟ ପରେ ସହଜବୋଧ ପାଠ୍ୟ ଲେଖିଦେଇ ଶିକ୍ଷକମାନେ ପିଲଙ୍କ ଅଭିଭାବକଙ୍କଠାରୁ ସାମାନ୍ୟ ମୂଲ୍ୟ ଗ୍ରହଣକରି ହସ୍ତଲିଖିତ ତାଳପତ୍ର ପୋଥିଗୁଡ଼ିକ ବିକି କରି ତାଙ୍କର ପିଲମାନଙ୍କୁ

ସେହି ପୋଥିଗୁଡ଼ିକ ଧରାଇ ଶିକ୍ଷକ ଓ ବାଳକ ଉଭୟଙ୍କ ଯୁଗ୍ମସ୍ୱରରେ "ଯଶୋଦା ବୋଇଲି", ଭାଗବତ, ଗୁଣସାଗର ପ୍ରଭୃତି ପଢ଼ାଉଥାନ୍ତି । ଅନନ୍ତର ଅଙ୍କଶିକ୍ଷା ପ୍ରଭୃତିର ବନ୍ଦୋବସ୍ତ କରାଯାଇଥାଏ । ଶିକ୍ଷକଙ୍କର ହସ୍ତଲିଖିତ ପୁସ୍ତକ ଗୁଡ଼ିକ ବିକ୍ରି ହେବାଦ୍ୱାରା ଶିକ୍ଷକଙ୍କର ଅର୍ଥିକ ସଙ୍କଟ ଦୂର ହୋଇଥାଏ । ଅତଏବ ଶିକ୍ଷକମାନେ ମନ ପ୍ରାଣ ପିଲାଙ୍କ ଉପରେ ଓ ବିଦ୍ୟାଳୟ ଉପରେ ଢାଳି ଦେଇ କାର୍ଯ୍ୟ କରନ୍ତି । ଅଭିଜ୍ଞ ବୟସ୍କ ଶିକ୍ଷକଙ୍କୁ ଦେଖିବାମାତ୍ରେ ସରଳମତି ବାଳକମାନଙ୍କ ମନରେ ସ୍ୱତଃ ଭୟ ଓ ଭକ୍ତି ଜାତ ହୁଏ ବୋଲି ସେମାନେ ଅକ୍ଳାନ୍ତ ପରିଶ୍ରମ କରି ଅଧ୍ୟୟନରେ ସଫଳକାମ ହୁଅନ୍ତି । ଅଜିକାଲି କିନ୍ତୁ ଏକବାରେକେ ...ର ଓଲଟା ବନ୍ଦୋବସ୍ତ ଦେଖାଯାଏ ।

ପୂର୍ବଯୁଗମାନଙ୍କରେ ଶାନ୍ତିଦେବୀଙ୍କ କ୍ରୋଡ଼ରେ ବସାଇ ଶିକ୍ଷା ପ୍ରଦାନ କରା ଯାଉଥିଲା, କିନ୍ତୁ ବର୍ତ୍ତମାନ ଯୁଗରେ ଘୋରତର ଅଶାନ୍ତିର ଉତ୍ସଙ୍ଗରେ ବିଦ୍ୟାଳୟମାନ ନିର୍ମିତ ହୋଇ "ଅର୍ଥମେଧ-ଯଜ୍ଞ" ଅନୁଷ୍ଠିତ ହେଉଅଛି । ଅଶାନ୍ତିର ମନ୍ଦିରକୁ ଶାନ୍ତି ଅବାହୂତ ହେଲେ ପରସ୍ପର ମନୋମାଳିନ୍ୟଥିବାକଥା ତ ବହୁଯୁଗରୁ ପରିସ୍ଫୁଟ ହୋଇ ଯାଇଅଛି, କେଉଁମୁହଁରେ ଶାନ୍ତି ଅସି ଅଶାନ୍ତି ଗୃହରେ ଆତିଥ୍ୟ ଗ୍ରହଣ କରିବ ?

ସୁତରାଂ ସେ ଦୁହିଙ୍କର ପରସ୍ପର ମିଳନ ସାଧନ ବିଷୟରେ ପ୍ରୟାସୀହେବା ବ୍ୟର୍ଥପ୍ରୟାସ ବିନା ଅଉ ସାର୍ଥକତା ସେଥିରେ କିଛିହେଲେ ନାହିଁ ।

କୈଶୋର ଅବସ୍ଥାରେ ପିଲାଙ୍କର ହୃଦୟ ସ୍ୱଚ୍ଛ ଦର୍ପଣ ସଦୃଶ, ସେଥିରେ ପ୍ରକୃତ ବା ବିକୃତ ଯେଉଁ ବସ୍ତୁ ଆଗରେ ଆଣି

ରଖାଯିବ, ତାହାର ପ୍ରତିବିମ୍ବ ସେହି ହୃଦୟ ଦର୍ପଣରେ ପ୍ରତିବିମ୍ବିତ ହେବ । ଏହା ଅଭିଭାବକର ଧ୍ୟେୟବସ୍ତୁ । ଅଭିଭାବକମାନେ ଏଥି ବିଷୟରେ ସଚେଣ ହେଲେ ଭାବନା ନ କରି, କେବଳ ବାହ୍ୟ ଗୃହଚର୍ଯ୍ୟା ଓ ଆଡ଼ମ୍ବରପୂର୍ଣ୍ଣ ରମଣୀୟତାରେ ବିମୁଗ୍ଧ ହୋଇଯାଇ, ଅଯଥାସ୍ଥାନରେ ପିଲଙ୍କର ଶିକ୍ଷାର ଭାର ନ୍ୟସ୍ତ କରିଦେବା ଦ୍ୱାରା ବାଳକର ଅଧଃପତନହିଁ ସାର ହୁଏ । ଅଧିକ ଗୋଟିଏ ଦୋଷ ଏହି ଯେ, ଜନକ ଜନନୀଙ୍କର ବାତ୍ସଲ୍ୟ ଯୋଗେ ଲାଳନା ଯଦି ମାତ୍ରାତିରିକ୍ତ ହୁଏ ତେବେ ମଧ୍ୟ ବାଳକର ଶିକ୍ଷାରେ ବାଧା ଉପଗତ ହୁଏ । ଏହିପରି ସକଳ ଦିଗରୁ ଶିକ୍ଷା ପ୍ରତି ତୀବ୍ରତର ଦୃଷ୍ଟି ରଖି, ଯଦି ଆହାର ଯୋଗାଇ ଦିଆଯାଏ, ତେବେ ଶିକ୍ଷା-ଲତିକା ଆହାର୍ଯ୍ୟ ଗ୍ରହଣ କରି ନିଜର ସବଳ "ସତ୍ତ୍ୱ" ପ୍ରତାନ-ଗୁଡ଼ିକ ନାନା ଦିଗକୁ ବଢ଼ାଇ ନବପଲ୍ଲବ, କୁସୁମ—ଫଳ ସମ୍ଭାରରେ ସମ୍ବୃତ ହୋଇ ଜନମନାକର୍ଷଣକାରିଣୀ ରୂପମାନରେ ପରିମଣ୍ଡିତ ହୁଏ । ଏହିପରି ପ୍ରତ୍ୟେକ ସ୍ତରରେ ଜାଗ୍ରତ ରହିଲେ, ଜ୍ଞାନ, ବିଜ୍ଞାନ ଧର୍ମ, ନୈଷ୍ଠିକତା, ପବିତ୍ରତା, ସାରଲ୍ୟ, ପରହିତୈଷଣା, ପ୍ରେମିକତା, ସାମାଜିକତା, ସ୍ୱଦେଶପ୍ରୀତି, ପ୍ରଭୃତି ସଦ୍‌ଗୁଣଗୁଡ଼ିକ ଆପେ ଆସି, ଅଧ୍ୟାୟୀର ଚରଣତଳେ ଶରଣାପନ୍ନ ହୁଅନ୍ତି । ଯେଉଁ ଛାତ୍ର ଏସବୁ ଗୁଣରହିତ ହୋଇ ଲୋକସମାଜରେ ପ୍ରତିଷ୍ଠିତ ହେବା ପାଇଁ କୌଟିଲ୍ୟ ନୀତି ପ୍ରୟୋଗ କରି, ଅଜସ୍ର ଅର୍ଥ ବ୍ୟୟଦ୍ୱାରା ଖ୍ୟାତି ସମାହୃତ କରିବା ପାଇଁ ଚେଷ୍ଟା କରିବସେ, ସେ ଚେଷ୍ଟା ସଫଳ ହେଲେ ମଧ୍ୟ କେତେକ ଦିନ ପାଇଁ ମାତ୍ର । ପୁଣି ସେ ଚେଷ୍ଟା ନୀତିହୀନତା ଯୋଗେ ସମାଜ ସମକ୍ଷରେ ନିଜର କୁତ୍ସିତ ଶରୀର ଦେଖାଇ ଜନମାନସ କଳୁଷିତ କରି ଆପେ ଆପେ ଅପସରି ଯାଏ । ସେଥିରେ ଅଜସ୍ର ଅର୍ଥବ୍ୟୟଟି ମାତ୍ର ଫଳ

ହୋଇଥାଏ । ଏଥିପାଇଁ ଲୋକ ପ୍ରବାଦଟି ସତ୍ୟ ବୋଲି ମାନିବାକୁ ହୁଏ,—ସେହି ପ୍ରବାଦଟି ଏହି ଯଥା—"ଢିଙ୍କି ସ୍ୱର୍ଗକୁ ଗଲେ ମଧ୍ୟ ଧାନ କୁଟେ" ଅନ୍ୟ କୌଣସି କାର୍ଯ୍ୟ କରିବାର ଯୋଗ୍ୟତା ଆଗରୁ ଅର୍ଜନ କରି ନଥିବାରୁ ଏହା ଘଟେ । ଏଥିରୁ ଜଣାଯାଏ ଯେ, ଶିକ୍ଷଣୀୟ ଜ୍ଞାନର ଆବଶ୍ୟକତା ବାଳକର ଜୀବନକାଳ ମଧ୍ୟରେ ପୁରମାହାରେ ଜନ୍ମିବା ଏକାନ୍ତ ବାଞ୍ଛନୀୟ । କେବଳ ଜ୍ଞାନଲାଭ କରି "ପରୋପଦେଶେ ପାଣ୍ଡିତ୍ୟଂ ସର୍ବେଷାଂ ସୁକରଂ ନୃଣାଂ" ଲୋକ କେବଳ ନିଜର ଜ୍ଞାନବତ୍ତା ଦେଖାଇ, ଲୋକ ସମାଜର ଉପଦେଷ୍ଟା ସଜାଇ, ବସିଲେ, ସମାଜରେ ପ୍ରତିଷ୍ଠା ବା ଆଦର ପାଇବେ ନାହିଁ । ଜ୍ଞାନବତ୍ତା ଥାଇ ଦୁରାଚରଣ ଦେଖାଇଲେ, ସମାଜ ପରିତ୍ୟକ୍ତ ହୁଏ । ନୋହେଲେ "ଜ୍ଞାନଂ ଭାରଃ କ୍ରିୟାଂ ବିନା" ସଦାଚରଣ ନଥିଲେ, ଜ୍ଞାନଭାର ତୁଲ୍ୟ ବିବେଚିତ ହୁଏ ।

ସକଳ ଜାଗତିକ ବସ୍ତୁ ସମ୍ବନ୍ଧୀୟ ଏବଂ ଆଧ୍ୟାତ୍ମିକ ଜ୍ଞାନ ସମ୍ପାଦନହିଁ ମାନବର ପ୍ରକୃଷ୍ଟ କର୍ତ୍ତବ୍ୟ ମନେ କରି, ପ୍ରାଚୀନ ମନୀଷୀମାନେ ସମ୍ପ୍ରଦାୟଭେଦରେ ଏହି କୈଶୋର ଅବସ୍ଥାରୁ ଗର୍ଭାଧାନାଦି ସଂସ୍କାର କରି, ଯଜ୍ଞୋପବୀତ ଦେଇ ଯାବତୀୟ ସଦ୍‌ଶିକ୍ଷାରେ ବାଳକକୁ ବ୍ରତୀ କରାନ୍ତି । ସେହି ଉପବୀତ ଯାବଜ୍ଜୀବନ ସେହିପରି ନିୟମପାଳନ କରି, ନିଜର ପ୍ରତିଜ୍ଞା ସୂଚନା କରି ଆଜୀବନ ଚଳାଇନିଏ । ଆଧୁନିକ ଯୁଗରେ ଉପରୋକ୍ତ ନିୟମର ବ୍ୟତିକ୍ରମ ଦେଖାଯିବାରୁ ଜନ ସମାଜର ଏ ଅଧଃପତନ ସଂସାଧିତ ହୋଇ ଅଛି ।

କୈଶୋର ଅବସ୍ଥାରେ ବାଳକର କୋମଳ ଭାବ ଦେଖି, ଅଭିଭାବକ ଯଦି ତା'ପ୍ରତି ଅବହେଳା ପ୍ରଦର୍ଶନ କରେ, ତେବେ

ଠିକ୍ଟି ଅମନୋଯୋଗୀ ହୋଇ, କେବଳ ଦୁର୍ବଳ ପିଲାଙ୍କ ମେଳରେ ଯାଇ ବିଦ୍ୟାଳୟରେ ଉପସ୍ଥିତ ମାତ୍ର ହୋଇ ଆସିଥାଏ । ପଠିତବ୍ୟ ବିଷୟ ପ୍ରତି ଦୃଷ୍ଟି ନ ରଖି, ଖେଳରେ ମତ୍ତ ବୁଲାଇ ଥାଏ । ସୁତରାଂ ମୂଳ ଦୁଅଟି ଏକବାରେକେ ଅଦୃଢ଼ ହୋଇଯାଏ । ପରିଣାମରେ ବାଳକ ସୁଫଳ ବଦଳରେ କୁଫଳହିଁ ପାଏ । ଅତଏବ କେବଳ ଯୁଗକୁ ନିନ୍ଦା ନ କରି ସମାଜର ହିତ ଦୃଷ୍ଟିରୁ ବିବେଚନା କରି, ସ୍ୱାର୍ଥାନ୍ଧତାର ବହ୍ନିକୁଣ୍ଡରେ ଦହି, ପାଠ୍ୟପୁସ୍ତକ-ଗୁଡ଼ିକର ଆମୂଳଚୂଳ ପରିବର୍ତ୍ତନ କଲେ ଯାଇ, ଭାରତର ସାମୂହିକ କଲ୍ୟାଣ ସଂସାଧିତ ହେବ । ତାହା ନୋହିବାଯାଏଁ କଲ୍ୟାଣ ସମ୍ଭବ ହୋଇ ପାରୁନାହିଁ । କେବଳ କଥାରେ ପ୍ରକାଶ କଲେ ତ ହେବ ନାହିଁ, କାର୍ଯ୍ୟରେ ମଧ୍ୟ ଦେଖାଇ ଦେଲେ ଅଚିରେ କଲ୍ୟାଣ ଦେଖାଦେବ । ଭଗବାନ୍ ଏ ପାପମଗ୍ନ ଯୁଗର ସ୍ନେହ ସଦ୍‌ବୁଦ୍ଧି ବିତରଣ କରି ଲୋକମାନଙ୍କୁ ଉଦ୍‌ବୁଦ୍ଧ କରନ୍ତୁ ।

---

## "ପୌଗଣ୍ଡ"

ଦେଖୁ ଦେଖୁ ଆଖି ପିଛୁଳାକେ ସବୁ ଗଲା ସରି, ଯୋଡ଼ଏ ଅବସ୍ଥା ଜୀବନକାଳରୁ କଟିଗଲା । 'ନ ସ ପୁନରାବର୍ତ୍ତତେ" ନ୍ୟାୟରେ ବ୍ୟକ୍ତିର ଆଉ ସେ କାଳ ଫେରିବ ନାହିଁ । ସେ ନିରଙ୍କୁଶ ମହାକାଳ ଗର୍ଭରେ ବିଲୀନ ହୋଇ ଯାଇଛି । ଆଉ ଲୋଡ଼ି ବସିଲେ ମାନବ କାହୁଁ ପାଇବ ? । ତା'ପରେ ଧୀରେ ଧୀରେ ପୌଗଣ୍ଡ ଆସି ଅଧିକାର କରି ବସେ ଶରୀରରେ । କ୍ରମଶଃ ଶରୀରର ଅଙ୍ଗପୁଷ୍ଟି ସାଧନ କରି, ଦରସ୍ଫୁଟ ସୌନ୍ଦର୍ଯ୍ୟରେ ଜଗତକୁ ମୁଗ୍ଧ କରେ । ତରଳିତ ନୟନ ଭଙ୍ଗିମାରେ, ଈଷତ୍

ସ୍ମୃତିବର୍ଦ୍ଧନଚ୍ଛଳରେ, ଗତିର ତାରଲ୍ୟରେ ଜନମନ ଆକର୍ଷଣ କରି ରଖିପାରେ ।

ଏଇ ଅବସ୍ଥାଟିରେ ଭବିଷ୍ୟତର ଗୁରୁଦାୟିତ୍ୱ ବହନର ପ୍ରାରମ୍ଭ ହୁଏ । ପିଲାଟି "ବଟୁକ" ନାମରୁ ଉତ୍ତୀର୍ଣ୍ଣ ହୋଇ ବର୍ତ୍ତମାନ "ମାଣବକ" ନାମ ଗ୍ରହଣ କରେ । ସକଳ ନିମ୍ନଶ୍ରେଣୀ ଗୁଡ଼ିକରେ ସମୁତ୍ତୀର୍ଣ୍ଣ ହୋଇ, ଉଚ୍ଚଶ୍ରେଣୀକୁ ଉଠିବାର ଉପକ୍ରମ ଏହି ସମୟରେ ହିଁ କରାଯାଇ ଥାଏ । ବର୍ତ୍ତମାନ ଯୁଗରେ ମଧ୍ୟ ସେହି ନିୟମର ବ୍ୟତିକ୍ରମ ଦେଖା ଯାଉନାହିଁ । ତେବେ ଏତିକି କୁହା ଯାଇପାରେ ଯେ, ପଠନ ପ୍ରଣାଳୀ ସାମାଜିକ ମନୋଭାବର ପରିବର୍ତ୍ତନ ଯୋଗେ ବିଭିନ୍ନରୂପ ଦେଖାଇ ଜ୍ଞାନୋତ୍କର୍ଷ ବଦଳରେ ଅପକର୍ଷ ସାଧନ କରିବାରେ ସାହାଯ୍ୟ କରୁଛି ।

"ଛାତ୍ରାଣାମଧ୍ୟୟନଂତପଃ" ଛାତ୍ରମାନଙ୍କର ନିୟମନିଷ୍ଠା ପ୍ରକୃତିରେ ସୃଷ୍ଟି ନୈଷ୍ଠ୍ୟ ଦେଖାଦିଏ । ସେଥିପାଇଁ ଗୁରୁଦେବ ତତ୍ପ୍ରତି ଦୃଷ୍ଟି ନିବେଶ ଦୟାପ୍ରବଣ ହୃଦୟରେ ଉପରୋକ୍ତ ବାକ୍ୟ ପ୍ରୟୋଗ କରି କହିଥାନ୍ତି ।

ପ୍ରତିମାସର ଶେଷ ପ୍ରତିପଦ ତିଥିରେ ପିଲାମାନଙ୍କର ବାଚନିକ ଶକ୍ତି ଏବଂ ପ୍ରତିଭାର ପରିଚୟ ପାଇବା ଅଭିଳାଷରେ ଗୋଟିଏ ସଭାକରି, ତହିଁରେ ପାଠ୍ୟ ସମ୍ବନ୍ଧୀୟ ବିଷୟ ନେଇ ଯଥାଶକ୍ତି କହିବାକୁ ଆଦେଶ କରିଥାନ୍ତି । ତଦ୍ଵାରା ଛାତ୍ରମାନେ ନିଜ ନିଜ ସ୍ମୃତି ଶକ୍ତିର ପରିଚୟ ଦେଇ ଭାଷଣ ଦିଅନ୍ତି । ଏହାହିଁ ଗୁରୁପରଂପରା ଚଳାଇ ଆସିଛି । ମାସିକ "ପରୀକ୍ଷା" ବୋଲି ତାହାକୁ ଗ୍ରହଣ କରାଯାଏ । ଅନଧ୍ୟାୟଦିନରେ ତାହା ଅନୁଷ୍ଠିତ ହୁଏ । ଏଥିରୁ ଜଣାଯାଏ ଯେ, ନିର୍ଦ୍ଦିଷ୍ଟ ଅଧ୍ୟୟନ ସମୟରୁ

ଗୋଟାଏ ନିମେଷ ମଧ୍ୟ ଅନ୍ୟ କାର୍ଯ୍ୟରେ ଲଗାଇବାର ବିଧିବ୍ୟବସ୍ଥା ନ ଥିଲା । ମାସରେ ପନ୍ଦରଦିନ ଅନେକ ବକ୍ତାମାନଙ୍କ ଭାଷଣରେ ବ୍ୟୟିତ ହେଉ ନଥାଏ, ସେ ସମୟେ ତାହା ଅସମୀଚୀନ ବିବେଚିତ ହେଉଥିଲା ।

ଛାତ୍ରମାନେ କେବେହେଲେ ପରିଶ୍ରମକାତର ହେଉ ନ ଥିଲେ । ଅଧ୍ୟୟନରେ ମାନସିକ ପରିଶ୍ରମ, ଉପବନରେ କାୟିକ ପରିଶ୍ରମ କରି ଅନ୍ତେବାସୀ ଏବଂ ଅଧ୍ୟାପକବୃନ୍ଦର ଆବଶ୍ୟକୀୟ ଫଳ, କୁସୁମାଦିର ବ୍ୟବସ୍ଥା କରାଯାଉଥିଲା । ଭୋଜନାଦିର ସୁବ୍ୟବସ୍ଥା ତଦ୍ୱାରା ହୋଇ ପାରୁଥାଏ । ସୁତରାଂ ଅନ୍ତେବାସୀମାନେ ନିଜ ନିଜର ଗୃହ ବୋଲି ବିଦ୍ୟାଳୟକୁ ମନେ କରି ସେ ଯାହାରି କର୍ତ୍ତବ୍ୟ କଳୁଷହୀନ ମନରେ କରିଯାନ୍ତି ।

ଧନିକ ବା ରାଜାମାନେ ସମୟେ ସମୟେ ବିଦ୍ୟାଳୟ ପରିଦର୍ଶନାର୍ଥ ସେହି ରମଣୀୟ ତପୋବନରେ ଉପଗତ ହୋଇ, ଅଧ୍ୟାପକ ଓ ଛାତ୍ରଙ୍କର ଅତୁଳନୀୟ ଆଦର ସମ୍ଭାଷଣରେ ବିମୁଗ୍ଧ ହୋଇ ତଦ୍‌ଗତ ଅଭାବ ପୂରଣ ପାଇଁ ପ୍ରତିଜ୍ଞାବଦ୍ଧ ହୋଇ ଫେରନ୍ତି । ଏହିପରି ଭାରତୀୟ ବନବିଦ୍ୟାଳୟଗୁଡ଼ିକ ନିରାଡ଼ମ୍ବର ଓ ସରଳ ଭାବରେ ଅବହମାନ କାଳରୁ ପରିଚାଳିତ ହୋଇ ଆସୁଥିଲା । ଛାତ୍ରମାନେ ଶାରୀରିକ, ମାନସିକ ସ୍ୱାସ୍ଥ୍ୟ ଲଭିକରି, ଶେଷରେ ଜ୍ଞାନମୟ ମିହିରାଲୋକରେ ଅଖିଳ ଜଗତକୁ ଉଦ୍ଭାସିତ କରି ସନ୍ମାର୍ଗ ପ୍ରଦର୍ଶନରେ ଦକ୍ଷ ହୋଇ ବସନ୍ତି ।

ଏହି ପୌଗଣ୍ଡ ସମୟରେ ଛାତ୍ରଗଣର ବୁଦ୍ଧି ବୃତ୍ତି ଦୁଇଭାଗରେ ବିଭକ୍ତ ହୋଇ ଦେଖାଦିଏ । ସେଥିରୁ ଗୋଟିଏ ଭାଗ ଅଧ୍ୟୟନରେ ରତ ହୁଏ, ଅପରଟି ବିଲସିତା ଆଡ଼କୁ ଟିକିଏ ଅଧିକ ପଡ଼ିବାର

ଦେଖାଯାଏ । ସୁତରାଂ ଅଧ୍ୟାପକ ନିଜର ଅଭିଜ୍ଞତା ବଳରେ ଛାତ୍ରର ସେହି ବଳସିଦ୍ଧାକୁ ଧର୍ମପଥରେ ଲଗାଇଦିଏ । ଛାତ୍ର ଅନଭିଳଷିତ ବଳସିଦ୍ଧାକୁ ଆଦର କରୁଥିଲେ ମଧ୍ୟ ଧର୍ମର ତାଡ଼ନାରେ ତହିଁରେ ଲିପ୍ତ ହୋଇ ରହିପାରେ ନାହିଁ । ଯାହାର ମନ ବଳସିଦ୍ଧାର ଅପାର ରମଣୀୟ ମାଧୁର୍ଯ୍ୟରେ ନିମଜ୍ଜିତ ରହେ, ସେ ଅନ୍ୟ ଉଦ୍ୟୋଗରେ କୃତକାର୍ଯ୍ୟ ହୋଇପାରେ ନାହିଁ । ଅତଏବ ଏହି ପୌଗଣ୍ଡରେ ଯେପରି ବଳସିଦ୍ଧାର ଅଧିକାରରେ ଛାତ୍ରର ମନ ନ ରହିବ, ସେଥିପ୍ରତି ସର୍ବତୋଭାବେ ଦୃଷ୍ଟି ନିବଦ୍ଧ ରହିବା ଏକାନ୍ତ ବାଞ୍ଛନୀୟ ।

ଯଦି ଏହି ଶ୍ରେଷ୍ଠ ଅବସ୍ଥାଟିରେ ବିଭିନ୍ନ ପ୍ରକାର ବେଶଭୂଷାରେ ସଜ୍ଜିତ ହୋଇ, ଖେଳ କୌତୁକ ଓ ନାଟକାଦି ବଳସିଦ୍ଧାରେ ଛାତ୍ର ମାତି ଉଠେ, ତେବେ ସେ ପରିଣାମରେ ଅଧ୍ୟୟନରୁ ବିରତ ହୋଇ, ବୈତଣ୍ଡିକ ପାଲଟି ଯାଏ । ଏହାର ଫଳରେ ସାମାଜିକ ନୀତିରେ ନାନାପ୍ରକାର ମତବାଦର ସୃଷ୍ଟି ହୋଇଅଛି । ସ୍ୱଳ୍ପଜ୍ଞ ଲୋକମାନେ ନିଜ ନିଜର ବଡ଼ିମା ଦେଖାଇବା ପାଇଁ ବିଭିନ୍ନ ମତବାଦର ଆଶ୍ରୟ ଗ୍ରହଣ କରନ୍ତି । ତଦ୍ଦ୍ୱାରା ସକଳ ସଦ୍ଧର୍ମ ଓ ସନୀତିର ବିନାଶ ଘଟୁଛି ବୋଲି ସେମାନେ ମନେ କରନ୍ତି ନାହିଁ । ଏହିପରି ସ୍ୱଳ୍ପ ଜ୍ଞାନସମ୍ପନ୍ନଲୋକଙ୍କ କୁପରାମର୍ଶରେ ଜଗତର ଆଜି ଏ ପରିଣତି ଦେଖାଦେଇଛି ।

ଅତଏବ ଏହି ଅବସ୍ଥାଟିକି ନିୟନ୍ତ୍ରିତ କରିବା ପାଇଁ କଠିନ ଶିକ୍ଷାନୀତିର ଆବଶ୍ୟକତା ରହିଛି । ବିଭିନ୍ନ ଭାଷା ଓ ନୀତିର ଶିକ୍ଷା ନିମନ୍ତେ ଶିକ୍ଷାପଦ୍ଧତି ପରିଷ୍କୃତ ହେଲେ ଛାତ୍ରର ମନ ବଳସିଦ୍ଧାଆଡ଼େ ଟଳିଥିଲେ ମଧ୍ୟ ସମୟର ଅଭାବତାଡ଼ନା ପାଇଁ ସେ ଦିଗରେ ମନ ଯାଇ ପାରେନାହିଁ । ପୁନଶ୍ଚ ବାଧ୍ୟ ହୋଇ ଶିକ୍ଷା ଆଡ଼କୁ ଢଳି ପଡ଼େ । ସେହେତୁ ଶିକ୍ଷା ସମୁଜ୍ଜ୍ୱଳବେଶରେ ଦେଖା-

ଦେଇ, ଗ୍ରାବ ହୃଦୟରେ ସ୍ୱନାଦତ୍ୟର ପ୍ରଖର ଜ୍ୟୋତି ବିକୀର୍ଣ୍ଣ କରେ ।

ଅତଏବ "ଅବସ୍ଥା ଦେଖି ବ୍ୟବସ୍ଥା" କରିପିବା ନୀତି ଶିକ୍ଷକମାନଙ୍କର ଯୁଗଯୁଗାନ୍ତରରୁ ଚାଲି ଆସିଛି । ବର୍ତ୍ତମାନ କାଳାନୁଭବରେ ଶିକ୍ଷାର ବ୍ୟବସ୍ଥା କରାଯାଉ ଥିବାରୁ ସମାଜରେ ବା ରାଜନୀତିରେ ବିଷମ ସଙ୍କଟ ଦେଖାଦେଉଛି । ଏକମାତ୍ର ଶିକ୍ଷାନୀତିର ବ୍ୟତିକ୍ରମର ଯୋଗେ ସକଳ ନୀତିରେ ଏ ସଙ୍କଟ ଆତ୍ମପ୍ରକାଶ କରିବାକୁ ସମର୍ଥ ହୋଇ ଉଠୁଛି । ଏହା ଏବେ ଭାରତୀୟ ନେତୃବୃନ୍ଦ ଅନୁଭବ କଲେଣି । କେତେକାଳହେଲା ବୈଦେଶିକ ନୀତିର ତାଡ଼ନାରେ ଉତ୍ପୀଡ଼ିତ ହୋଇଥିଲେ । ବର୍ତ୍ତମାନ ସେ ଭୟ ଦୂର କରି ଅନ୍ଧାବୃତ ଯୁଗରୁ ଆଲୋକକୁ ଆସିବା ପାଇଁ ପ୍ରବଳ ଉଦ୍ୟମ ଚାଲିଲାଣି । ଏଣିକି ଏପରି ଶିକ୍ଷାନୀତି ଗଠିତ ହେବ ଯେ, ଭବିଷ୍ୟତ ବଂଶଧରମାନେ କେବଳ ଜାତୀୟ ପ୍ରେମରେ ନ ମାତି ଦୈହିକ ଓ ଆଧ୍ୟାତ୍ମିକ ପ୍ରେମରେ ନିଜ ନିଜକୁ ନିଯୋଜିତ କରିପାରିବେ । ଶିକ୍ଷାନୀତି ତାହା କରିବାରେ ସମର୍ଥ ହେବ । ଏହି ଅବସ୍ଥାରେହିଁ କ୍ରମଶଃ ରାଜନୀତି ଆଦର ସୂଚନା ଦେବାର ବ୍ୟବସ୍ଥା କରାଯାଏ । ଏତିକି ପ୍ରଭେଦ ଯେ, ଶିକ୍ଷାର ଉଦ୍ଦେଶ୍ୟ ଶାସ୍ତ୍ରୀୟଜ୍ଞାନ ସମ୍ପାଦନ, ତାହାହିଁ ମୁଖ୍ୟ, କିନ୍ତୁ ଅନ୍ୟାନ୍ୟ ବିଷୟଗୁଡ଼ିକ ଶିକ୍ଷା ବିଭାଗରେ ଗୌଣ ବା ଅପ୍ରଧାନ ହୋଇ ରହିଥାଏ । କାରଣ ସେ ସମୁଦାୟ ବିଷୟ "ଜ୍ଞାତକ" ହେବାପରେ ସମାଲୋଚ୍ୟ ହୁଏ ।

ଅନ୍ତେବାସିର ଶାରୀରିକ ସ୍ୱାସ୍ଥ୍ୟ, ସୌଷ୍ଠବ, କାର୍କଶ୍ୟ, ସୌନ୍ଦର୍ଯ୍ୟ ପ୍ରଭୃତି ସମ୍ପାଦନ ପାଇଁ, ଅନଧ୍ୟାୟ ଦିନଗୁଡ଼ିକରେ କ୍ରୀଡ଼ା; କୌତୁକ, ଆମୋଦ, ପ୍ରମୋଦର ବିଧିବ୍ୟବସ୍ଥା କରି ଶିକ୍ଷକଙ୍କ ଉପସ୍ଥିତିରେ

ତାହା ସବୁ ଆଚରଣ କରିବା ପାଇଁ ନିୟମ ରଖାଯାଇ ଥାଏ । ଅତଏବ ଛାତ୍ରମାନେ ସୁସ୍ଥ ସବଳ ହୋଇ, ବିଦ୍ୟାର୍ଜ୍ଜନରେ ପରସ୍ପର ପ୍ରତିଯୋଗୀ ସାଜି ଅନନ୍ୟସୁଲଭ କାର୍ଯ୍ୟ ମାନସିକ ପରିଶ୍ରମ କରି ସ୍ୱୀୟ ଜ୍ଞାନଦୀପ୍ତିରେ ଅଜ୍ଞାନ ତିମିରକୁ କେଉଁଆଡ଼େ ତଡ଼ି ଦିଅନ୍ତି ।

"ଲଜ୍ଜା," ଏହି ଶବ୍ଦର ଅର୍ଥ କ'ଣ ? ଆଜି କାଲିର ଶିକ୍ଷାରେ ଦେଖା ଯାଏ ନାହିଁ । ଶିକ୍ଷିତ ବା ଅଶିକ୍ଷିତ ଲୋକ ଜ୍ଞାତସାରରେ ବା ଅଜ୍ଞାତସାରରେ ତ୍ରୁଟି କରିଥିଲେ, ସାମାଜିକ ବୟୋଜ୍ୟେଷ୍ଠ ବା ମାନ୍ୟଗଣ୍ୟବ୍ୟକ୍ତିଙ୍କ ଆଗରେ ଅବନତ ହୋଇ ତଦୀୟ ଉପଦେଶାତ୍ମକ ପ୍ରବୋଧନାଗୁଡ଼ିକ ମାନି ମନେ ରଖିବା, ପୁଣି ଦୁଃସାହସିକତା ଦେଖାଇ ଗୁରୁଜନଙ୍କୁ ଉତ୍ତର ନ ଦେବା ହେଉଛି ଲଜ୍ଜା ଶବ୍ଦର ଅର୍ଥ । କିନ୍ତୁ ଆଜିକାଲି ଏ ସମାଜ କ୍ଷେତ୍ରରେ ଦେଖା ଯାଉଛି କଣ ? ତାହାର ସମ୍ପୂର୍ଣ୍ଣ ବୈପରୀତ୍ୟ । ଅତଏବ ଶିକ୍ଷାନୀତିର ପରିବର୍ତ୍ତନ ହେଲେ ଯାଇ ଲଜ୍ଜା ପ୍ରଭୃତି ସଦ୍‌ଗୁଣର ସ୍ଥାନ ମାନବ ହୃଦୟରେ ସୁପ୍ରଶସ୍ତ ହେବ । ଲଜ୍ଜାରୁ ଭୟର ଜନ୍ମ, ଭୟରୁ ଲୋକ ଅସଦାଚରଣରୁ ନିବୃତ୍ତ ହୁଏ । ସଦାଚାରୀ ହେଲେ, ସର୍ବଜନପ୍ରିୟ ହୋଇ ସୁଖଶାନ୍ତିରେ ଜୀବନକାଳ କଟାଏ । ଶିକ୍ଷା ନିୟନ୍ତାର ଏହି ସଫଳ ପ୍ରାପ୍ତି ହିଁ ମାନବ ସମାଜର ଚରମ ଲକ୍ଷ୍ୟ ।

ବର୍ତ୍ତମାନର ନାମିକ ବର୍ଦ୍ଧମାନତାରେ ବ୍ୟକ୍ତି ଝଟେଶପର ମନୋଭାବ କେତେ କଠିନତର ଶାସନାଧୀନରେ ଥିଲେ ମଧ୍ୟ ବଳପିତା ଅଙ୍କୁ ଢଳ ପଡ଼େ, ସେଥିଲାଗି ସବୁ ଶିକ୍ଷାର୍ଥୀ ସମାନଭାବରେ ଶିକ୍ଷା ପାଉଥିଲେ ସୁଦ୍ଧା ଜ୍ଞାନାର୍ଜ୍ଜନରେ ସମତା ରଖିପାରନ୍ତି ନାହିଁ । ଯେ ହେତୁ "ଚିତ୍ତବୃତ୍ତିରପ୍ରତ୍ୟକ୍ଷ" ତାହାର ଚିତ୍ତବୃତ୍ତି କିପରି କିଏ ତାହା ଅନୁମାନ ବଳରେ ସ୍ଥିର କରିବ ? ଯଦି ତାହା ସ୍ଥିର କରିପାରୁଥାନ୍ତା, ଏ ଦୃଶ୍ୟମାନ ଜଗତରେ ଏତେ

ପ୍ରକାର ନୀତି ଆଉ ବିଭିନ୍ନ ଧର୍ମର ସୃଷ୍ଟି ହୋଇପାରି ନ ଥାନ୍ତା। ସେଇଥିରୁ ଜଣାଯାଏ ଯେ, "ଭିନ୍ନରୁଚିର୍ହି ଲୋକଃ" ବିଭିନ୍ନଲୋକର ଭିନ୍ନ ଭିନ୍ନ ଅଭିରୁଚି ଅନୁସାରେ ଏତେ ଧର୍ମ ଏତେ ମତବାଦ, ଏତେ ପୁରାଣ, ଶାସ୍ତ୍ରର ସୃଷ୍ଟି ହୋଇଅଛି। ଲୋକସମାଜ ମଧ୍ୟ ସକଳ ପ୍ରକାର ମତବାଦକୁ ଆଦର କରି ତଦାୟ ସମ୍ମାନରେ କୌଣସି ପ୍ରକାର ବାଧା ନ ଦେଇ ଅବହମାନ କାଳରୁ ଅଗ୍ରହରେ ଚଳାଇ ଆସୁଅଛି। ତଦ୍ୱାରା ସମାଜର ସକଳ ଦିଗରେ ସୌନ୍ଦର୍ଯ୍ୟ ସୁସମ୍ପାଦିତ ହୋଇଅଛି ବୋଲି ସେ ଭାବନା କରେ। ସୁତରାଂ ବିଭିନ୍ନ ମତବାଦରେ ସମାଜରେ କେବେହେଲେ ଅସ୍ୱସ୍ଥ୍ୟ ପ୍ରକାଶିତ ହୁଏ ନାହିଁ। ସେହି ବିଭିନ୍ନ ମତକୁ ଆଦର୍ଶ କରି ଗୋଟିଏ ଗୋଟିଏ ସମାଜର ସୃଷ୍ଟି ହୋଇ ସୁଶୃଙ୍ଖଳିତ ଓ ନିୟମିତ ହୋଇ ଚଳି ଆସୁଅଛି। ବର୍ତ୍ତମାନ ଯୁଗରେ ସେହି ମତବାଦିତା ଯୋଗେ ଲୋକେ ଅତି ଚତୁର ହୋଇ, ଅଦୃଶ୍ୟ ବା ଅନୁମାନିକ ଜଗତର ଅସ୍ତିତ୍ୱ ସମ୍ବନ୍ଧରେ ଜନମାନସରେ ଅପ୍ରତ୍ୟୟ ଜନ୍ମାଇଁ, କେବଳ ପ୍ରତ୍ୟକ୍ଷୀଭୂତ ବାସ୍ତବ ଜଗତରେ ନିବଦ୍ଧ ଭାବେ ଜଡ଼ିତ ହେବାରୁ ଏତେ ସଙ୍କଟ ମାଡ଼ି ଆସୁଛି। ମାନବ ସ୍ୱାର୍ଥପର ହୋଇ, ଯେଉଁ ନବ ନବ ଆବିଷ୍କରଣରେ ମନ ପ୍ରାଣ ଢାଳି ଦେଉଛି, ତାର ପରିଣାମ ସମ୍ବନ୍ଧରେ ମୁହୂର୍ତ୍ତେ ସୁଦ୍ଧା ଭାବନା କରୁନାହିଁ। ସ୍ୱାର୍ଥାନ୍ଧତା ଧମ୍ମଦାୟ ଜଗତରେ ଆଜି କୂଟନୀତି ପ୍ରଣୟନ କରିବାରେ ବହୁ ପ୍ରୟାସ କରୁଛି। କୂଟନୀତି କେବେହେଲେ ସରଳତାକୁ ସ୍ଥାନ ଦେବନାହିଁ। ତାର ଚିର ବୈରଭାବ ଅନନ୍ତକାଳରୁ ରହିଆସିଛି। ବର୍ତ୍ତମାନ ଏ ପାପପୂର୍ଣ୍ଣ ଯୁଗରେ କୁଟିଳତାକୁ ଅସଲ ସଜ ମିଳିଛି, ଏ ସୁବିଧା ସୁଯୋଗକୁ ସେ କାହିଁକି ବା ହରାଇ ବସିବ ?। ଯାହାପର୍ଯ୍ୟନ୍ତ ଚେଷ୍ଟା କରି, କପଟହେଲେ ସେ ଲୋକ ହୃଦୟରୁ

ସରଳତାକୁ ଗୁରୁତର ଅପମାନସହ ବିଦାୟ ଦେଇ, ନିଜର ଅଖଣ୍ଡ ପ୍ରତିଷ୍ଠା ଲାଭ କରିବା ପାଇଁ ମନସ୍ଥ କରି ବସିଛି ।

କାଳର ପ୍ରଖରତର ଗତିରେ ଏ ଅପଚେଷ୍ଟାର ସ୍ଥିତି କେତେଦିନ ପାଇଁ ? ଘନାନ୍ଧକାର ସମୟରେ ଖଦ୍ୟୋତ ନିଜର ଉଜ୍ଜ୍ୱଳ ଜ୍ୟୋତିଟିକକ ଦେଖାଇ ଅଦୃଶ୍ୟ ହେଲାପରି ଏ ସ୍ଥିତି କୁଆଡେ ଉଭେଇ ଯିବ । ସର୍ବଗ୍ରାସୀକାଳ କ୍ଷଣକେ ସକଳର ସତ୍ତା ପର୍ଯ୍ୟନ୍ତ ନ ରଖି ସଂସାରରୁ ସବୁ ଲିଭାଇଦେବ ।

ଯେତେ ଯେତେ ମହାପୁରୁଷ ଏ ସଂସାରରେ ଜନ୍ମି ନିଜ ନିଜର ମହିମା ଦେଖାଇ ନିରଙ୍କୁଶ ବା ଅପ୍ରତିଦ୍ୱନ୍ଦୀ ହୋଇଥିଲେ, ସେମାନେ ତ କାହିଁ ଆଜ ଏ ମରସଂସାରରେ ଦେଖାଯାଉ ନାହାନ୍ତି, ତେବେ ସେମାନଙ୍କୁ କିଏ କେଉଁଠି ରଖିଲା ? ଏ ପ୍ରଶ୍ନ ସ୍ୱତଃ ଜାଗ୍ରତ ହୁଏ । ଏହାର ଉତ୍ତରରେ ମୁନି ଋଷିମାନେ, ପୁରାଣ, ଦର୍ଶନ, ଏବଂ ଉପନିଷଦ ଗ୍ରନ୍ଥମାନଙ୍କରେ ବିଶେଷଭାବେ ପ୍ରପଞ୍ଚିତ କରି ବୁଝାଇ ଦେଇଛନ୍ତି । ଏ ଯୁଗରେ ସେସବୁ ଜଟିଳ ଗ୍ରନ୍ଥ ପଢ଼ୁଛି କିଏ ? ଅତଏବ ଶ୍ଳୋକରେ ଯୁଗୋଚିତ ସରଳ ଭାଷାରେ କହିବାକୁ ଗଲେ, ସେହି ସର୍ବଂକଷକାଳ ଅନନ୍ତ ବ୍ରହ୍ମାଣ୍ଡମଣ୍ଡଳକୁ ପ୍ରତି ମୁହୂର୍ତ୍ତରେ ଗ୍ରାସ କରୁଛି । ଭାରତପୁରାଣରେ "ଧର୍ମବକୋପାଖ୍ୟାନ" ବର୍ଣ୍ଣନାରେ ଯୁଧିଷ୍ଠିର ଓ ବକର କଥୋପକଥନରେ, ଯୁଧିଷ୍ଠିର ସେହିକାଳକୁ ଲକ୍ଷ୍ୟକରି, ଧର୍ମବକର ଗୋଟିଏ ପ୍ରଶ୍ନର ଉତ୍ତର ଦେଇ କହିଥିଲେ—

"ଅହନ୍ୟହନି ଭୂତାନି ଗଚ୍ଛନ୍ତି ଯମ ମନ୍ଦିରଂ ।
ଶେଷା ସ୍ଥିରତ୍ୱ ମିଚ୍ଛନ୍ତି କିମାଶ୍ଚର୍ଯ୍ୟ ମତଃପରଂ ।

ଏହାର ଅର୍ଥ ଏହି ଯେ ଦୈନନ୍ଦିନ ଏ ମରସଂସାରରେ ପ୍ରାଣୀମାନେ ଜନ୍ମମରଣ ଲଭୁଥିବା ଦେଖି ସୁଦ୍ଧା ଜୀବିତ ପ୍ରାଣୀ ବା

ମନୁଷ୍ୟମାନେ ନିଜ ନିଜ ମନରେ ଯେଉଁ ଚିରସ୍ଥିର ଭାବନାକୁ ସ୍ଥାନ ଦେଇ, ମଦଗର୍ବରେ ବିସ୍ଫାରିତ ବକ୍ଷଃ ଦେଖାଇ ଚାଲୁଅଛନ୍ତି, ଏହା ଅପେକ୍ଷା ଆଉ ଅଧିକ ଆଶ୍ଚର୍ଯ୍ୟର କଥା କ'ଣ ଅଛି । କର୍ମକ୍ଷେତ୍ରରେ ଛ'ଗୋଟି ରତୁର ବିମଳବିକାଶ ହେଲା ପରି ମାନବର ଜୀବନକାଳଟି ଛ'ଟି ଅବସ୍ଥାରେ ବିଭକ୍ତ ହୋଇ ଦେଖାଯାଏ । ଅବସ୍ଥାପରେ ଅପର ଅବସ୍ଥା ଆସି, ମାନବର ମନକୁ ବିଭିନ୍ନ ଦିଗରେ ଚାଳିତ କରେ । ଏହି ଅବସ୍ଥା ମଧ୍ୟରେ ମନୁଷ୍ୟ ସମୟୋଚିତ ଅଭିନୟ ପ୍ରଦର୍ଶନ କରି, ସେହି ମହାକାଳର ଅନନ୍ତ ଗର୍ଭରେ ଚିରୁ ସଂକାଶ ବିଲୀନ ହୋଇଯାଏ । ଆଉ ପୁଣି ତାର ମର୍ତ୍ତ୍ୟମଣ୍ଡଳରେ ଦେଖା ହୁଏ ନାହିଁ । ଅତଏବ ଏ ପ୍ରାଣିସଂସାରର ଅନିତ୍ୟତା ପ୍ରତିପାଦିତ ହୋଇଅଛି ।

ପ୍ରତ୍ୟକ୍ଷଭାବରେ ଯାହା ଦେଖା ଯାଉଛି, ସେଥିରୁ ମଧ୍ୟ ସେହି ଅନିତ୍ୟ ବା ନଶ୍ୱରତା ପ୍ରମାଣିତ ହେଉଅଛି । ସର୍ବୋଚ୍ଚଶ୍ରେଣୀରଠାରୁ ଆରମ୍ଭ କରି ଅତି ନିମ୍ନଶ୍ରେଣୀ କର୍ମଚାରୀ ପର୍ଯ୍ୟନ୍ତ ଦୃଷ୍ଟିପାତ କଲେ ଜଣାଯାଏ ଯେ, କେହିହେଲେ ସ୍ୱପ୍ରତିଷ୍ଠିତ କର୍ମସ୍ଥାନରେ ଚିରସ୍ଥିର ନୁହନ୍ତି । ରଙ୍ଗମଞ୍ଚରେ ଅଭିନେତୃବୃନ୍ଦ ନିଜ ନିଜର ଅଭିନୟ ପ୍ରଦର୍ଶନ କରି ଯବନିକାନ୍ତରାଳକୁ ବାହାରି ଚାଲିପରି, କେତେକ କ୍ଷଣ କର୍ମସ୍ଥାନରେ କର୍ମ କରି ମାନବ ସମଧାନ ଯବନିକା ଭିତରକୁ ଚାଲିଯାଏ ।

ପାର୍ଥିବ ଶୋଣିତର ଉତ୍ତେଜନାରେ ଅବସ୍ଥାସୁଲଭ ଉଦ୍ଦୀପନାର ବଶବର୍ତ୍ତୀ ହୋଇ, ଇତର ଜନର ନିନ୍ଦା, ପରାପବାଦ, ରାଗ, ଦ୍ୱେଷ, ଅହଂକୃତ, ପ୍ରତିଯୋଗିତା ପରୋତ୍କର୍ଷାସହନଶୀଳତା ଦିଗରେ ଚାଳିତ ହୋଇ ସଂସାରରେ ଶାନ୍ତି ସୁଖ ବଦଳରେ ଉତ୍କଟତର ମନୋବେଦନାନୁଭବ ଓ ଅଶାନ୍ତି ଉପଭୋଗ କରି,

ଜୀବନ୍ତ କାଳଟିକକ ଶେଷ କରିଦିଏ । ଅଥ ଶେଷକାଳକୁ ସ୍ମୃଷ ଶାସ୍ତ୍ର ଲେଉ ବସିଲେ, ମିଳିବ କିମିତି ? ସେତେବେଳକୁ ତ ବାର୍ଦ୍ଧକ୍ୟ କାଳବ୍ୟାଳୀ ଫଣ ଗ୍ରାସିବାକୁ ମୁଖବ୍ୟାଦାନ କରି ରୁହିଁ ବସିଥିବ ! ଚଉଷଠି ରୋଗ ତ ଗୋଟିକ ପରେ ଗୋଟିଏ ଆସି ଶରୀରଟିରେ ନିଜ ନିଜର ଅଧିକାର ବିସ୍ତାର କରିବା ପାଇଁ ଜାଗ୍ରତ ଦୃଷ୍ଟି ଦେଇଥିବେ, ସେତେବେଳେ ଔଷଧ ବା ବୈଜ୍ଞାନିକ ଚିକିତ୍ସାର ଅଣୁ ଉପଯୋଗିତା ରହିପାରେ, କିନ୍ତୁ ରୋଗମାନେ ଅମାନିଆ ହୋଇ କାହାରିକି ନ ମାନି ଶରୀରରୁ ଜୀବନକୁ ପ୍ରବଳ ଅଧିକାର ଦେଖାଇ ନେଇଯିବେ । ସେତେବେଳେ ମାନବର ବୈଜ୍ଞାନିକତା ଆଉ ଧରଣି ଧରି ରଖି ପାରିବନାହିଁ । ଏଥିବିଷୟରେ ଗୋଟିଏ ନୀତି ବାକ୍ୟ କହୁଦେଲେ ସେତେ କିଛି ଅସଙ୍ଗତ ହେବ ନାହିଁ । ଯଥା—

"ମାତୁଲେ ଯସ୍ୟ ଗୋବିନ୍ଦଃ ପିତା ଯସ୍ୟ ଧନଞ୍ଜୟଃ
ସୋଽଭିମନ୍ୟୁ ରଣେ ଶେତେ ନିୟତିଃ କେନ ବାଧ୍ୟତେ ।"

ନିୟତିର ଅଲଙ୍ଘନୀୟ ନିୟମକୁ ଜଗତରେ କେହିହେଲେ ଲଙ୍ଘିପାରିବେ ନାହିଁ । ଯାହାଙ୍କର ମାତୁଳ ସ୍ୱୟଂ ଶ୍ରୀକୃଷ୍ଣ, ପିତା ହେଉଛନ୍ତି ବୀରାଗ୍ରଗଣ୍ୟ ସ୍ୱୟଂ ଅର୍ଜ୍ଜୁନ, ସେହି ଅଭିମନ୍ୟୁ ଆଜି ରଣାଙ୍ଗଣରେ ଅନ୍ତିମ ଶଯ୍ୟା ଗ୍ରହଣ କରିଛନ୍ତି । ଏତେ ମହାରଥୀ ଥାଇ ସୁଦ୍ଧା କେହିହେଲେ ନିୟତିକୁ ବାଧାଦେଇ ଅଟକାଇ ପାରି ନ ଥିଲେ ।

ବର୍ତ୍ତମାନ ଏ ଜଡ଼ବାଦୀ ଯୁଗରେ ଏତେ ବୈଜ୍ଞାନିକ, ଏତେ ଜ୍ଞାନୀ ପୁଣି ଗବେଷକ, ଉଦ୍ଭାବକ, ସଂସ୍କାରକ, କବି, ପ୍ରାବନ୍ଧିକ ଓ ମେଧାବୀ ଥାଇ, କାହିଁକି ଯେ ଏ କ୍ଷଣଭଙ୍ଗୁରତା ବିଷୟରେ ନିଜ ନିଜର କର୍ତ୍ତବ୍ୟକୁ ଟିକିଏହେଲେ ଆଧ୍ୟାତ୍ମିକ ଜ୍ଞାନ ଅଡ଼େ ଲଗାଉନାହାନ୍ତି, ଏହାର କାରଣ ଜଣା ଯାଉନାହିଁ ।

ଏ ଖେଳଘର ସଦୃଶ ଅନିତ୍ୟ ସଂସାରରେ କ୍ଷଣିକ କ୍ରୀଡ଼ା ଦେଖାଇ ପ୍ରାଣୀ ଇହଜଗତରୁ ଚିର ବିଦାୟ ନେଉଛି । ଏହାତ ଆଜି ନୂତନ ଘଟଣା କଥା ନୁହେଁ ଯେ, ନୂଆକରି ହେଉଥିବ । ଆଧୁନିକ ଯୁଗରେ ବୈଜ୍ଞାନିକତାର ପରାକାଷ୍ଠା ଯଦି ସେହି ପରମାତ୍ମାଙ୍କ କାରଣ ବା ବିଶ୍ୱକର୍ତ୍ତୃତା ସମ୍ବନ୍ଧେ ଅନୁସନ୍ଧାନ ଚାଲନ୍ତା ତେବେ ଏ କୁଟିଳତର ଯୁଗରେ ଏତେ ଅଶାନ୍ତି, ଅଭାବ ଓ ସ୍ୱାର୍ଥପରତା ଆଜି ଦେଖା ଦେଉନ୍ତା ନାହିଁ । ମାନବାଦି ପ୍ରାଣୀମାନେ ଏ ସସୀମ ଜୀବନକାଳ ସୁଖରେ କଟାଇ ଦେଉନ୍ତେ ଏବଂ ସାଂସାରିକ କ୍ଲେଶବହୁଳ ଜଞ୍ଜାଳରୁ ରକ୍ଷାପାଆନ୍ତେ ।

---

# ଯୌବନ

ସୌର ଜଗତର ଗତିବିଧି ଅନୁଲକ୍ଷ କରି ଦିନ ରାତିର ପ୍ରଭେଦ ଅବଲମ୍ବନରେ ସୃଷ୍ଟିବୃନ୍ଦ ସମୟକୁ ଅବ୍ଦ, ଅୟନ, ଋତୁ, ମାସ, ପକ୍ଷ, ଦିନ, ପ୍ରହର, ଯାମ, ଘଟିକା, ଦଣ୍ଡ, ଲିପ୍ତି, କଳା, କାଷ୍ଠା ଓ ସୂକ୍ଷ୍ମପ୍ରାଣ ପର୍ଯ୍ୟନ୍ତ ବିଭକ୍ତ କରି ଦେଇ ଅଛନ୍ତି, ତାହାର ପରିବର୍ତ୍ତନ ଆଜି ହୋଇପାରୁ ନାହିଁ । ଯଦି ତାର ପରିବର୍ତ୍ତନ ପାଇଁ ଚେଷ୍ଟା ହୁଏ, ତେବେ ତାହାହାରା ଦୁଃସାହସିକତାର ପରିଚୟ ଦିଆଯିବ ବିନା—ଆଉ କିଛି ନୁହେଁ । ସମୟପରିମାପକ ଯନ୍ତ୍ର ତୁଲ୍ୟ ଆଦିତ୍ୟଙ୍କ ଅନନ୍ତ ଜଗତର ସମୟନିୟାମକ । ଏହି ନିୟମିତ ସମୟ ମଧ୍ୟରେ ସକଳ ପ୍ରାଣୀ ଏ ମରଜଗତରେ ଜଳବୁଦ୍‌ବୁଦ ସଦୃଶ କ୍ଷଣେ ଦେଖା ଦେଇ ଅପର କ୍ଷଣରେ କେଉଁଆଡ଼େ ଉଭେଇ ଯାନ୍ତି ।

ଏଥିଲାଗି ସାଂସାରିକ କ୍ରିୟାକଳାପ ଚଳାଉଥିଲେ ସୁଦ୍ଧା ଜୀବନରେ ଅତ୍ୟାଶକ୍ତି ପ୍ରଦର୍ଶନ ନ କରିବା ପାଇଁ ମହାପୁରୁଷମାନେ ଯୁଗଯୁଗାନ୍ତରରୁ ମାନବ ସମାଜକୁ ବହୁତର ଉପଦେଶ ଦେଇ ଆସିଚନ୍ତି ।

ସୂର୍ଯ୍ୟ ଗତିକୁ ଲକ୍ଷ୍ୟ କରି, ଯୁଗାବ୍ଦର ବିଭଜନ କରିବାରେ ମାନବର ଜୀବନ କାଳକୁ ମଧ୍ୟ ଛ' ଗୋଟି ଅବସ୍ଥାରେ ବାଣ୍ଟି ଦିଆଯାଇଛି । ଯେପରି ଋତୁମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଋତୁରାଜ ବସନ୍ତକୁ ଅତି ଉଚ୍ଚସ୍ଥାନ ଦିଆଯାଏ, ସେହିପରି ମାନବାୟୁ ଅବସ୍ଥା ମଧ୍ୟରେ ସର୍ବୋଚ୍ଚ ସ୍ଥାନ ଅଧିକାର କରେ ଯୌବନ । ବସନ୍ତରେ କୁସୁମନିଚୟର ସୌରଭ ଓ ସୌନ୍ଦର୍ଯ୍ୟର ସମ୍ଭାର ଭରପୂର ହେଲାପରି, ଯୌବନାବସ୍ଥାରେ ମାନବର ମୁଖପଦ୍ମ, କରପଦ୍ମ, ପାଦପଦ୍ମ, ଜବାଅଧର, ଚମ୍ପକକୋରକାଙ୍ଗୁଳି, ନେତ୍ରନୀଳୋତ୍ପଳ ପ୍ରଭୃତି ବିକଶିତ ହୋଇ, ଜନମନୋହରଣ କରେ । ବିଶ୍ୱରଞ୍ଜନ-ଦକ୍ଷ ମଦନ ଯୌବନ ସମୟରେ ଶରୀରରେ ପ୍ରବେଶି ସ୍ୱୀୟ କଳାକାରେ ଶରୀରଟିକୁ ଏପରି ରଞ୍ଜିତ କରେ ଯେ, ସ୍ୱୟଂ ବିଶ୍ୱନିର୍ମାତା ମଧ୍ୟ ନିର୍ମାଣ ସମୟେ ରଞ୍ଜନରେ ଅପାରଗତା ଦେଖାଇ ତାହା କରିପାରି ନଥାନ୍ତି । ଯଦି ବିଶ୍ୱବିଧାତାଙ୍କର ରଞ୍ଜ ଦକ୍ଷତା ଥାନ୍ତା, ତେବେ ସେ ବାଲ୍ୟକାଳରୁହିଁ ତାହା ସବୁ ଦେଖାଇ ଦେଇଥାନ୍ତେ । ମଦନ ମାନବ ଶରୀରରେ ଯେତେବେଳେ ଅଧିକାରୀ ହୋଇ ରହେ, ସେତେବେଳେ ସେ ଆଉ ମାତାପିତାଦି ଗୁରୁଜନ-ମାନଙ୍କର ଶାସନ ମାନେ ନାହିଁ । ଭାବେ ଏମାନଙ୍କ ଯୋଗେ ମୋର ନିରଙ୍କୁଶ ଅଧିକାରରେ ବାଧା ଆସିଯିବ ବୋଲି ସର୍ବଦା କ୍ରୋଧକୁ ସଙ୍ଗେ ରଖି, ସ୍ୱାଧିକାର ବଜାଏ ରଖିବା ପାଇଁ ସଚେଷ୍ଟ ହୁଏ । ମଦନପ୍ରିୟା ରତି ସ୍ୱାମୀ ସୋହାଗିନୀ ହୋଇ ସକଳ ସୁନ୍ଦର

ପଦାର୍ଥ ଉପଭୋଗ କରିବା ପାଇଁ ମନରେ ଏପରି ପ୍ରବୃତ୍ତି ହୁଏ ଯେ, ତାର ସେ ଦୁର୍ବାର ଲାଳସା କେହି ବନ୍ଦ କରି ପାରେ ନାହିଁ । ସେ ଲାଳସା କେତେବେଳେ ସଙ୍ଗୀତ ଶ୍ରବଣରେ, କେବେ ବା ନାଟ୍ୟାଭି ଦର୍ଶନରେ ଅବା ସୁମନୋହର କୁସୁମଶୋଭି ଉପବନ ଭ୍ରମଣରେ ଅଥବା ଚଳଚ୍ଚିତ୍ର ଦର୍ଶନରେ ବଳବତ୍ତୀ ହୋଇ ଉଠେ । ଗୃହରେ ବା ପରିବାରରେ ଯେତେ ଅଶାନ୍ତି ଥିଲେ ବି ଯୁବକ କୌଣସି ପ୍ରକାରେ ସେଆଡ଼େ ଅପାଙ୍ଗରେ ସୁଦ୍ଧା ନ ଚାହିଁ ଅଭିଳଷିତ ସିଦ୍ଧି ଉଦ୍ଦେଶ୍ୟରେ ସତତ ଅଗ୍ରସର ହୋଇଥାଏ । ଲୋକ ଗର୍ହଣୀୟ ବୋଲି ଯାହା ସେ ଜାଣିଥାଏ, ତାହା ନିଜ ଆଚରଣରେ ସେ ଦେଖାଇ ଦେଇ ମଧ୍ୟ ଲଜ୍ଜିତ ହୁଏ ନାହିଁ । ଯଦି କେହି ମାନ୍ୟବ୍ୟକ୍ତି ଏବଂ ହିତାକାଂକ୍ଷୀ ସନ୍ଦେଶଯୋଗେ ବୁଝାଇବା କଥା କହନ୍ତି, ତେବେ ତାଙ୍କର ବଡ଼ପଣ ସେତିକରେ ସମାପ୍ତ; ଆଉ କୌଣସି ସମୟରେ ହେଲେ ପଦେ କହିବା ପାଇଁ ଅଧିକାର ରହେ ନାହିଁ । ଏପରି ଅବସ୍ଥାରେ ଅପର ବ୍ୟକ୍ତିର ଆଉ କି ଅଧିକାର ରହିଲା ଯେ, ତାର ଯୌବନର ଉଦ୍ଧତ ଲାଳସାକୁ ସନ୍ମାର୍ଗକୁ ଆଣିବା ପାଇଁ ଚେଷ୍ଟା କରିବ !

ତେବେ ଏହାଦ୍ୱାରା ଯୌବନକୁ ନିନ୍ଦାକରା ଯାଉଛି ବୋଲି ମନେକରିବା ଉଚିତ ନୁହେଁ । କାରଣ ତାର ଔଦ୍ଧତ୍ୟକୁ ଶୃଙ୍ଖଳିତ ଓ ନିୟମିତ କରିବାହିଁ ଏହାର ଉଦ୍ଦେଶ୍ୟ । ଯୌବନାବସ୍ଥାରେ ମାନବ ଭଗବାନ ସୃଷ୍ଟି କର୍ତ୍ତାଙ୍କର ଏ ମହମାମୟ ସୃଷ୍ଟି କାର୍ଯ୍ୟରେ ସହାୟତା ଦେଖାଏ, ସୁତରାଂ ମାନବ ଈଶ୍ୱରଙ୍କର ପ୍ରତିଭୂ କହିଲେ ଚଳେ । ଯେଉଁ ଯୌବନ ଏ ସଂସାରକୁ ପ୍ରପଞ୍ଚିତ ଓ ପରମ ରମଣୀୟ କରି ଗଢ଼ିଦେଉଛି ତାହାକୁ କିଏ ବା କିମିତି ନିନ୍ଦା କରିବ ! କାମାନ୍ଧମାନଙ୍କର ଯୌବନରେ ପୂର୍ଣ୍ଣ ସାମ୍ରାଜ୍ୟ ପ୍ରତିଷ୍ଠିତ

ହେବାରୁ ଅତି ଗର୍ହଣୀୟ କାର୍ଯ୍ୟକଳାପରେ ଲୋକକୁ ପ୍ରବଳ ପ୍ରବର୍ତ୍ତନା ଦିଅନ୍ତି, ଶିଷ୍ଟାଶିଷ୍ଟ ବ୍ୟବହାର, କର୍ତ୍ତବ୍ୟାକର୍ତ୍ତବ୍ୟ ଜ୍ଞାନକୁ ବ୍ୟକ୍ତି ହୃଦୟରେ ରହିବାକୁ ଦିଅନ୍ତି ନାହିଁ । ଉପଦେଶାତ୍ମକ କଥାରେ ବ୍ୟକ୍ତିକୁ ପରାଙ୍ମୁଖ କରାଇ ଦିଅନ୍ତି । ଅତଏବ ମନୀଷିମାନେ ବ୍ୟକ୍ତିର ଶତ୍ରୁ ସ୍ୱରୂପ ଏହି ଛ' ଗୋଟି ଯୌବନ ଭାବକୁ ଛ'ଟି ନାମରେ, ଯଥା—କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ ବୋଲି ଅଭିହିତ କରି ଅଛନ୍ତି ।

ଏହିମାନେ ବ୍ୟକ୍ତିକୁ ଅସନ୍ମାର୍ଗକୁ ଟାଣି ନେଇଯାନ୍ତି । ଏମାନଙ୍କର ଦୁର୍ବାର ପଥ ନିରୋଧ ପାଇଁ ଶାସ୍ତ୍ର ପୁରାଣାଦିରେ ନାନା ଦୃଷ୍ଟାନ୍ତ ଦେଇ ଲୋକ ସମାଜକୁ ବୁଝାଇ ଦେଇଚନ୍ତି । ସେହି ପୁରାଣାଦିରେ ଭକ୍ତି, ତପ, ଶୌର୍ଯ୍ୟ, ବୀର୍ଯ୍ୟ, ଧୈର୍ଯ୍ୟ, କାରୁଣ୍ୟ, ସେବ୍ୟ, ସେବକ, ଦୈନ୍ୟ, ଶିଷ୍ଟାଚାର, କୁଳାଚାର, ଦେଶାଚାର ପ୍ରଭୃତିର ବିଶଦ ବର୍ଣ୍ଣନା କରି, ଯୌବନୋଦ୍ଧତ ବ୍ୟକ୍ତିକୁ ସତ୍ପଥକୁ ଆଣିବା ପାଇଁ ବହୁକାଳରୁ ଯଥୋଚିତ ଚେଷ୍ଟା କରାଯାଇଚି । ଏ ଯୁଗରେ ସେହି ପୁରାଣ ବଚନର ବିପରୀତାର୍ଥ କରି, ଲୋକଲୋଚନ ଗୋଚରୀଭୂତ କରି ଦେବାରୁ ଆଜି ସମାଜର ଏ ଅଧଃପତନ ଘଟିଅଛି । "ଦୈବୀହ୍ୟେଷା ଗୁଣମୟୀ ମମମାୟା ଦୁରତ୍ୟୟା" ଏ ବାକ୍ୟଟିରେ କି ଉପଦେଶ ଦିଆଯାଇଚି, ଅବସ୍ଥା ଭେଦରେ ସଂସାର ବ୍ୟାପାରରେ ଯେଉଁ ମମତା ଜନ୍ମେ, ତାହା ନିସର୍ଗ ସିଦ୍ଧ ଐଶ୍ୱରିକ ମାୟା, ଲୋକ ଏକମାତ୍ର ଈଶ୍ୱର-ପର ହୋଇ, ଜୀବନ ଅତିବାହିତ କଲେ, ସର୍ବକର୍ତ୍ତୃତ୍ୱ ଈଶ୍ୱରଙ୍କ ଠାରେ ଥିବା କଥା ବୁଝିପାରି, ତନ୍ମାୟା ମାୟାଜନିତ ମୋହରୁ ଅପସରଣ କରିବାରେ ସମର୍ଥ ହୁଏ । ଯେଉଁ ପରମାତ୍ମାଙ୍କ ମାୟାତତ୍ତ୍ୱ ପ୍ରସୂତ ଆକାଶ ପରିପୂରିଙ୍କ ଶରୀର, ଆକାଶ ରୂପରେ

ରହି ତହିଁରୁ ଅନ୍ତର ହୋଇ ଗଗନକୁ ନିୟନ୍ତ୍ରିତ ବା ଶାସିତ କରି ରଖିଛନ୍ତି, ଅଥଚ ଆକାଶ ତାହାଙ୍କୁ ଚିହ୍ନି ପାରୁ ନାହିଁ । ଯେ ଆଦିତ୍ୟରୂପୀ ହୋଇ ଆଦିତ୍ୟଙ୍କୁ ଶାସିତ କରି ରଖିଛନ୍ତି, ପୁଣି ଆଦିତ୍ୟ ତାହାଙ୍କୁ ଜାଣି ପାରୁ ନାହାନ୍ତି । ଯେ ଜଳରୂପୀ ହୋଇ ଜଳକୁ ଶାସନା ଦେଉଛନ୍ତି ଜଳ ତାହାଙ୍କୁ ଜାଣିପାରେନାହିଁ । ଯେ ଅଗ୍ନିରୂପୀ, ଅଗ୍ନିକୁ ଶାସିତ କରି ରଖିଛନ୍ତି, ଅଗ୍ନି ମଧ୍ୟ ତାହା ଜାଣି ପାରୁ ନାହାନ୍ତି । ଯେ ପୁଣି ବାୟୁରୂପୀ, ଯାହାରେ ରହି ବାୟୁକୁ ଶାସନା ଦିଅନ୍ତି ଅଥଚ ବାୟୁ ତାହା ଜାଣି ପାରନ୍ତି ନାହିଁ । ଯାହାଙ୍କର ରୂପ ପୃଥିବୀ, ଯେ ଯାହାରେ ରହି ପୃଥିବୀକୁ ଶାସନା ଦେଇ ରଖିଛନ୍ତି, ପୃଥିବୀ ତାହା ଜାଣି ପାରୁ ନାହିଁ । ଚନ୍ଦ୍ର ଏବଂ ନକ୍ଷତ୍ର ମଧ୍ୟ ସେହି ଈଶ୍ୱରଙ୍କର ରୂପ ହୋଇ ସୁଦ୍ଧା ତାହାଙ୍କ ଶାସନ ମାନି ଚଳୁଛନ୍ତି ଅଥଚ ଚିହ୍ନି ପାରୁ ନାହାନ୍ତି । ତେବେ ସେହି ଉପାଦାନରେ ଗଠିତ ଏହି ନରକଳେବର, ଏଥିରେ ଜୀବାତ୍ମା ରହି ସେହି ପରମାତ୍ମାଙ୍କୁ ଅବା ଜାଣିବ କପରି ? ସୁତରାଂ ସେ ଅନନ୍ତ ମାୟା ଶକ୍ତିର କୁହୁକରେ ପଡ଼ି ଅଜ୍ଞାନ ତମିସ୍ରବର୍ଦ୍ଧିରେ ବୁଡ଼ି ଉଦ୍ଭୂଜତା ହୋଇ, କେତେକ ସମୟ ପରେ ଶେଷଲୀଳା ଦେଖାଇ ଯାଆନ୍ତି । ମାନବ ସେହି ପରମାତ୍ମାଙ୍କ ଶକ୍ତିକୁ ନିଜ ବାଚନିକତା ବଳରେ ଜଗତ ସମକ୍ଷରେ ପ୍ରକାଶ କରି କହି ଦେବାକୁ ଯୁଗଯୁଗାନ୍ତରରୁ ପ୍ରବଳ ଉଦ୍ୟମ କରି ଆସୁଛି ସତ କିନ୍ତୁ ତାହା କରି ନପାରି ଅତୃପ୍ତ ମାନସରେ ପରାଙ୍ମୁଖ ହୋଇଅଛି । ଅତଏବ ନିସ୍ପୃହ ଭାବରେ ବାଧ୍ୟ ହୋଇ ମାୟା ଜାଲରେ ଆବଦ୍ଧ ରହୁଛି । ତଥାପି ପରମ ପୁରୁଷଙ୍କ ପରାଶକ୍ତିର ପରିଚୟ ପାଇବା ପାଇଁ ଅନନ୍ତ କାଳରୁ ଅବିରାମ ଚେଷ୍ଟା ଚାଲିଛି । କେବେ ଯେ ଏହାର ବିରତି ଘଟିବ, କିଏ ବା କହି ପାରିବ ?

ମାନବର ସେହି ପରମ ରମଣୀୟ ଉଦ୍ଦାମ ଯୌବନର ଅପୂରଣୀୟ ଲାଳସା, ଅପରଦିଗରେ ଜ୍ଞାନପିପାସା, ଏ ଦୁହିଁଙ୍କ ମଧ୍ୟରେ ଘୋରତର କଳହ ଜାତ ହୋଇ, ମାନବକୁ ସଂଶୟ ଦୋଳାରେ ପକାଇ ଦିଅନ୍ତି । କାହା ଅଧୀନରେ ରହିବ ବୋଲି ମନୁଷ୍ୟର ମନରେ ଆନ୍ଦୋଳନ ଜାତ ହୁଏ, କରିବ କଣ, ଶେଷରେ କିଛି ସ୍ଥିର କରି ନପାରି ଲାଳସାର ବଶବର୍ତ୍ତୀ ହୋଇ, ଆଧ୍ୟାତ୍ମିକତାକୁ ଏକବାରେକେ ମାନସପଟରୁ ଲିଭାଇ ଦିଏ ।

ଚଡ଼ାଗାଢ଼ରୁ ମାରୁତ ସଂସ୍ପର୍ଶରେ ତରଙ୍ଗ ଉଠିଲା ପରି, ଯୌବନ ସଂସ୍ପର୍ଶରେ ନରମାନସରେ ବିଭିନ୍ନ ଲାଳସା ଜନ୍ମି, ଜାଗତିକ ବସ୍ତୁଜାତରେ ମନକୁ ବିଜଡ଼ିତ କରେ । ସବଳ ସତେଜ ଇନ୍ଦ୍ରିୟଗଣ କାମଦେବଙ୍କର ଅନୁଚର ହୋଇ ଯେ ଯାହାର କର୍ତ୍ତବ୍ୟ ସାଧନରେ ସତତ ଅଭିନିବିଷ୍ଟ ରହନ୍ତି, ମଦନ ଅଭୀଷ୍ଟ ସିଦ୍ଧିରେ ଆତ୍ମନିୟୋଗ କରି ଦିଅନ୍ତି । ଏକମାତ୍ର ପ୍ରଭୁପରାୟଣତାର ପ୍ରତୀକ ସ୍ୱରୂପ ଇନ୍ଦ୍ରିୟଗଣ ଏହିପରି କର୍ମଚତୁର; ବିଶ୍ୱାସୀ, ସୁଦକ୍ଷ, ପ୍ରଭୁଭକ୍ତ କର୍ମଷ୍ଠସବୃନ୍ଦକୁ ଧରି, ଯୌବନରେ ମଦନ-ସାମ୍ରାଜ୍ୟ ନରଦେହରେ ବିସ୍ତୃତ ହୁଏ ।

ବିଶ୍ୱାମିତ୍ରାଦି ମୁନିଋଷିମାନେ ବାତାମ୍ବୁ ସେବନ କରି ସୁଦ୍ଧା, ମଦନ କଦନ ଭୟରୁ ରକ୍ଷା ପାଇ ନପାରି, ତାହାର ସାମ୍ରାଜ୍ୟରେ ତଦୀୟ ଅଲଙ୍ଘ୍ୟ ଶାସନର ଅଧୀନତା ସ୍ୱୀକାର କରି ବସିଥିଲେ । ବର୍ତ୍ତମାନ ଯୁଗରେ ସଘୃତ ଶାଲ୍ୟନ୍ନ, ମତ୍ସ୍ୟ ମାଂସଯୁକ୍ତ ଆହାର କରି ମାନବ ଯଦି ସଂଯମର ନାମ ଉଚ୍ଚାରଣ କରିବ, ତେବେ ଏହା ହାସ୍ୟାସ୍ପଦ ନୁହେ ବୋଲି କିଏ କହିବ ?

ମଦନର ମନସ୍ତୁଷ୍ଟି ନିମନ୍ତେ ତଦୀୟ କର୍ମଗୁରୁମାନେ କଳିଯୁଗରେ ନିଜନିଜର କର୍ମଦକ୍ଷତା ପ୍ରଦର୍ଶିତ କରିବା ପାଇଁ ଯେ ଯାହା ବାଟଁରେ ତ ଲଗି ପଡ଼ିଲେ । ବେଂତରିବ ମଧ୍ୟ ରଙ୍ଗମଞ୍ଚ-ଗୁଡ଼ିକରେ ଚଳଚ୍ଛାୟାଚିତ୍ର ବିଳାସପୂର୍ଣ୍ଣ ନୃତ୍ୟ ଦେଖାଇ ଜନମାନସରେ ପ୍ରଭୁଭକ୍ତିର ପରାକାଷ୍ଠା ପ୍ରଦର୍ଶିତ କରୁଅଛନ୍ତି । ସୁତରାଂ ମଦନ ଏ କଳିଯୁଗରେ ଅପ୍ରତିହତ ସାମ୍ରାଜ୍ୟ ପ୍ରତିଷ୍ଠା କରି ପରମ ସୁଖରେ ହୃଦୟ ସିଂହାସନରେ ଉପବିଷ୍ଟ ହୋଇ, ନବନବ ଅନୁଶାସନ ପ୍ରଣୟନ କରି, ନରସମାଜକୁ ଶାସନକରୁଛନ୍ତି । କାଳେ ପରମାତ୍ମଜ୍ଞାନ ପିପାସାର ଅଧିକାର ଆସିଯିବା ଭୟରେ ନବନବ ଅନୁଶାସନମାନ ବୈଜ୍ଞାନିକ ପ୍ରଣାଳୀରେ ଉଦ୍ଭାବନକରି, ସ୍ୱସାମ୍ରାଜ୍ୟ ଯେପରି ଚିର ପ୍ରତିଷ୍ଠିତ ରହେ, ସେଥିପାଇଁ ପ୍ରବଳତର ଚେଷ୍ଟା କରାଯାଉଛି । ପ୍ରଭୁଭକ୍ତ ଜନ ସମାଜ ମଦନ ଦେବଙ୍କର ସ୍ନେହର ପାତ୍ର ହେବା ମାନସରେ ତଦୀୟ ଗୁଣାବଳି ବର୍ଣ୍ଣନରେ ମନପ୍ରାଣ ଢାଳି ଦେଇ ଗ୍ରନ୍ଥମାନ ପ୍ରଣୟନ କରି ପରମ ସୁଖ ସ୍ୱଚ୍ଛନ୍ଦରେ ଜୀବିତ କାଳକଟାଉ ଅଛନ୍ତି ।

କିନ୍ତୁ ମନରେ, ଜାଣେନାହିଁ ଦୁର୍ଦ୍ଦାନ୍ତ କାଳ କାହାରି ଶାସନର ଅଧୀନ ନୁହେ, ସୁତରାଂ ସେ କାହାରି ନିୟମ କେବେହେଲେ ମାନି ଚଳିନାହିଁ, ଏବେମଧ୍ୟ ମାନିଚଳିବ ନାହିଁ । ସେ ଏକମାତ୍ର ପରମାତ୍ମାଙ୍କ ନିର୍ଦ୍ଦେଶକୁ ମାନି ସମ୍ମାନ ଦେଇ ଆସିଛି ଏବଂ ସେହିପରି ଭବିଷ୍ୟତରେ ମଧ୍ୟ ମାନି ଚଳିବ । ଏହାକୁ ଅବିଶ୍ୱାସ କରି, କେବଳ କ୍ଷଣିକ ଧୃଷ୍ଟତା ପ୍ରକାଶିତ ହୁଏ ଯିନା ଆଉକିଛି ନୁହେ । ଏହା ଜାଣି ସୁଦ୍ଧା ମଦନ ଯୌବନରେ ନିଜର ଅଧିକାର ନ ଦେଖାଇ ରହିବକି ? ସେ କହୁଛିଏ ଯେ, "ଅବଶ୍ୟଂ ଭାବିନୋ ଭାବା ଭବନ୍ତି ମହତାମପି" ଯାହା ଅବଶ୍ୟମ୍ଭାବୀ ତାହାତ ନିଶ୍ଚୟ ଘଟିଯିବ, ଏଥିପାଇଁ କା ଭୟକଣ? ମୋର ଯୌବନରେ ପୂର୍ଣ୍ଣ ଅଧିକାର, ଅପର କେହି ଆସି ପଦ ମୋର

ଅଧିକାରରେ ବାଧାଦିଏ ତେବେ ମୁଁ ତାହା କଦାପି ସହ୍ୟ କରିବି ନାହିଁ । ଯେ କୌଣସି ଉପାୟରେ ମୋର ଯୌବନାଧିକାରକୁ ସୁରକ୍ଷିତ କରି ରଖିବା ପରେ ଅନ୍ୟ ଯାହା କିଛି ବିଚାର କରାଯାଇ ପାରେ । ମତେ ନ ପଚାରି ଯୌବନରେ ଯଦି ଅନ୍ୟ କାହାରି ଅନୁଶାସନ ବଳାତ୍କାରରେ ପ୍ରବେଶକରେ ତେବେ ମୋର ପ୍ରଧାନ ପୃଷ୍ଠପୋଷକ ଦେବରାଜ ଇନ୍ଦ୍ରଙ୍କୁ କହି, ଯୌବନରେ ଇତର ସାମ୍ରାଜ୍ୟକୁ ରଖାଇ ଦେବି ନାହିଁ । ଏହାହିଁ ମୋର ଦୃଢ଼ତର ପ୍ରତିଜ୍ଞା ।

ଜନସମାଜ ବର୍ତ୍ତମାନ ଯୁଗରେ ମଦନଙ୍କର ଉପରୋକ୍ତ ପ୍ରତିଜ୍ଞା କଥା—ଜାଣିପାରି ଏ ଜ୍ଞାନ ବଳରେ, ମଦନ ତୋଷିଣୀ ଗଦ୍ୟ ପଦ୍ୟମୟୀ ଅମୃତ ବାଣୀକି କବିତା ବା ପ୍ରବନ୍ଧାକାରେ ଲେଖି ଲୋକସମାଜରେ ବହୁଳ ପ୍ରଚାର ପାଇଁ ବିତରଣ କଲେଣି । ସେହେତୁ ଯେତେ ଜ୍ଞାନୀ, ବୈଜ୍ଞାନିକ, ମନୀଷୀ, ବିବେକୀ, ନ୍ୟାୟପରାୟଣ, ଧନିକ, ନିର୍ଦ୍ଧନ, ସକଳ ଶ୍ରେଣୀର ଲୋକ କାମ ସାମ୍ରାଜ୍ୟ ଭୁକ୍ତ ହୋଇ ଏକ ମନ ଧ୍ୟାନରେ ତଦୀୟ ଗୁଣକୀର୍ତ୍ତନରେ ଲାଗିପାରିଛନ୍ତି । ସ୍ୱଜ୍ଞାନୁଗତୋଽର୍ଥଃ ” ପୂର୍ବାଚାର୍ଯ୍ୟମାନେ ତ ଅଗରୁ ଲେଖି ରଖିଦେଇ ଯାଇଛନ୍ତି । ବର୍ତ୍ତମାନ ଯୁଗରେ ବୈଜ୍ଞାନିକମାନେ ମଦନସଙ୍କଳ୍ପରେ ବାକ୍ୟାର୍ଥ ବିନିଯୋଗ କରି ଏ ଯୁଗରେ ଏହାହିଁ ଧର୍ମବୋଲି ମନେ କରିଛନ୍ତି । କିନ୍ତୁ ମନେ କରୁ ନାହାନ୍ତି ଯେ, କେବଳ ଯୌବନରେ ସିନା ମଦନର ଅଲଙ୍ଘନୀୟ ଶାସନ ସୁପ୍ରତିଷ୍ଠିତ ହୋଇ ରହିବ, ତାହା ମଧ୍ୟ ରହିବା ସମୁଚିତ । ମାନବର ଅବସ୍ଥାତ ଚିରସ୍ଥାୟୀ ନୁହେ । ଋତୁ ପରିବର୍ତ୍ତନତୁଲ୍ୟ, କେତେକ ଦିନମାନ ରହି ଚାଲିଯିବ । ଅପର ଗୋଟିଏ ଅବସ୍ଥା ତାର ବିଦାୟ ସଙ୍ଗେ ସଙ୍ଗେ ଆସି ଉପଗତ ହୋଇ, ଲୋକମନରେ ଭାବାନ୍ତର ଜାତକରାଇ ବସିବ । ସେତେବେଳେ ଏ ମଦନାନୁଚରମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇ, ଜଳକାପରି

ଉପରକୁ ଚାହିଁ କେବଳ ବିସ୍ମିତ ହୋଇବେ । ଯୌବନରେ ମଦନ ଅଧିକାରୀ ହେଲାପରେ ଅପର ଅବସ୍ଥା, ପ୍ରୌଢ଼ତ୍ୱରେ କ୍ରମଶଃ ବିବେକର ସାମ୍ରାଜ୍ୟ ପ୍ରତିଷ୍ଠିତ ହେବ । ସେତେବେଳକୁ କାମାନୁଚରମାନେ ନିଜ ନିଜ କାର୍ଯ୍ୟରେ ଅଭିନିବିଷ୍ଟ ରହି ରହି ନିସ୍ତେଜ, ଦୁର୍ବଳ, ଉତ୍ସାହହୀନ,—କର୍ମପରାଙ୍ମୁଖ ଏବଂ ଶ୍ଳଥାଙ୍ଗ ହୋଇ ଯାଇ ଥିବେ । ଏପରି ଦୁର୍ବଳ କର୍ମଚାରୀଗଣଙ୍କୁ ନେଇ ମଦନ ଆଉ କି ସାମ୍ରାଜ୍ୟ ଚଳାଇବ ? ଯଦିଚ ତାହା ବଜାଏ ରଖିବା ପାଇଁ ଚେଷ୍ଟା କରେ, ତେବେ ବିବେକର କର୍ମଚାରୀମାନେ ତାହାକୁ ଉପହାସ କରି ଉଡ଼ାଇ ଦେବେ । ଏତେବଡ଼ ଯୌବନ ସାମ୍ରାଜ୍ୟ ଚଳାଇ ଯେଉଁ ମଦନ ଅସପତ୍ନ ରାଜାପଣ ଦେଖାଉ ଥିଲା, ସେ ଆଜି ଅପର ଉପହାସ ଦେଖି ଶୁଣି, ନିଜର ଗରିମା ହରାଇ କିପରି ବା ସେ ରାଜ୍ୟରେ ରହିବ ? ସୁତରାଂ ସେ ବିଚାର ସିଦ୍ଧାନ୍ତ କରି, କର୍ମଚାରୀବୃନ୍ଦଙ୍କୁ ଡାକି କହିବ ଯେ, ତୁମମାନଙ୍କର କର୍ମଦକ୍ଷତାରେ ବିଶେଷ ଅଭାବ ପରିଲକ୍ଷିତ ହେଲାଣି, କେବଳ ସେ ବିବେକାନୁଚରଗଣର ଏହା କୃତ ବୋଲି ମୋର ମନରେ ସମ୍ପୂର୍ଣ୍ଣ ଧାରଣା ଜନ୍ମିଲାଣି, ଏଣିକି ସୁଖଶାନ୍ତିରେ ଆମେ ଆଉ ରହିପାରିଲା ପରି ଜଣାଯାଉ ନାହିଁ, ସେ ହେତୁରୁ ଆମେ ଦ୍ୱନ୍ଦ ଭିଆଇ ପ୍ରଜାଙ୍କ ସହିତ ଅମେଳ ଘଟାଇ ରାଜ୍ୟ ଛାଡ଼ିଯିବା ଅପେକ୍ଷା ବନ୍ଧୁଭାବରେ ପ୍ରଜାଙ୍କୁ ସାମ୍ରାଜ୍ୟ ଦେଇ ତଦୀୟ ସ୍ନେହ ସମ୍ବର୍ଦ୍ଧନାରେ ସମ୍ବର୍ଦ୍ଧିତ ହୋଇ, ଅଭିମତ ଦେଶକୁ ଚାଲିଯିବ । ଏଥିମଧ୍ୟରେ ନାନା କୌଶଳ କରି, ଅନ୍ୟତ୍ର ସାମ୍ରାଜ୍ୟ ପ୍ରତିଷ୍ଠାର ଆୟୋଜନ କରିବା, ମୋର ନବୋଦ୍ଭାବିତ ବୈଜ୍ଞାନିକତା ବଳରେ ଯାହା ଇଚ୍ଛା ତାହା ଅବଶ୍ୟ କରି ହୋଇପାରେ । ମୋର ଏ କୂଟନୀତିରେ ବିବେକ ଆସି ଯେ ହସ୍ତକ୍ଷେପ କରିପାରେ ସେ ବିଶ୍ୱାସ ନାହିଁ । "ଏ ଯୁଗରେ ତାହା ମୁଁ ସହଜରେ କରାଇ ଦେବି ନାହିଁ ।" ଏପରି ବିରାଟସ୍ପୃହାର ଅନାଲୋଚିତ ପ୍ରତିଜ୍ଞା ବାକ୍ୟ ପରି ଗୁଡ଼ାଏ ଆତ୍ମବଡ଼ିମା ଦେଖାଇ

ବସିଲେ କି ହେବ, ପ୍ରକୃତିର ନିୟମ ତ ଭିନ୍ନ, ସେ କଣ ଅନ୍ଧ ଇତର କଥା ଶୁଣିବ ? ତାର ନିୟମ ସକଳ ଯଥା ସ୍ୱତରେ ଚଳାଇବା ପାଇଁ ସେ ଟିକିଏ ହେଲେ ଅବହେଳା କରିବ ନାହିଁ । ସବଂଗବଂଗଣ୍ଡିକୀ ପ୍ରକୃତି ବାହିଁକି ତାହାର ନିୟମ ମାନିଚାଲିବ । ମନୁଥ ଶାସନରେ ଜନମାନସରେ ଏଇ ଭ୍ରବଟି ସ୍ଥାନ ପାଇପାରେ ନାହିଁ ବୋଲି, ଲୋକେ ବିବିଧ ରୋଗଯନ୍ତ୍ରଣା ଭୋଗି, ଅମୃତମୟ ସଂସାରକୁ ଅକାଳରେ ବିଷମୟ କରି, ଯମସଦନାଭିମୁଖୀ ହୁଅନ୍ତି ।

ପ୍ରକୃତି, ଅବସ୍ଥା ବଦଳାଇ ଦିଏ । ମାନବ ତାହାର ଶକ୍ତିକି ବାଞ୍ଛାନଫଳରେ ଶତ ଚେଷ୍ଟା କରି ମଧ୍ୟ ବ୍ୟର୍ଥ ମନୋରଥ ହୋଇ ବସିରହୁ ନାହିଁ । ପୁଣି ପ୍ରକୃତିର ବିକୃତି ଘଟାଇବା ପାଇଁ ଅକ୍ଳାନ୍ତ ଗବେଷଣା ଚଳାଇଛି । ପରିଣାମରେ କେଉଁ ପକ୍ଷର ଜୟ ହେବ, ପରମାତ୍ମାହିଁ ଜାଣନ୍ତି ।

ବିଶ୍ୱବିମୋହିନୀ ପ୍ରକୃତି ଯୌବନରେ ପ୍ରାଣିକୁ ସତେଜ ଓ ସରସ କରି, ଅଙ୍ଗେ ସଜେଇ ଦିଏ । ତାପରେ ପ୍ରାଣୀ ମନରେ ଏପରି ଉନ୍ମାଦ ଉତ୍ତେଜନା ଆଣି, ଅହଂକାରୀ କରି ରଖେ । ସେହି ଅହଙ୍କାର ନିଜର ସ୍ଫୀତ ଦେଖାଇ ଦ୍ରଷ୍ଟାଙ୍କ ସହ ପ୍ରତିଯୋଗିତା କରିବାକୁ ଅସ୍ପର୍ଦ୍ଧା ପ୍ରକାଶ କରେ । କେବଳ ଯେ ଅସ୍ପର୍ଦ୍ଧା ଦେଖାଇ ହୁଏ ତାହା ନୁହେ, ଏ ମଧ୍ୟ ପ୍ରାଣୀ ସୃଷ୍ଟି କରେ, ଏବଂ ବିଜ୍ଞାନ ସାହାଯ୍ୟରେ କେତେକ ଅଦ୍ଭୁତ କ୍ରିୟା ଦେଖାଇ, ବିଶ୍ୱବାସିଙ୍କି ଚମତ୍କୃତ କରିଦିଏ । ଏହା ସବୁ ମନୁଷ୍ୟ ଅବଶ୍ୟ କରୁଛି ବୋଲି କହାଯାଇ ଥାଏ, କିନ୍ତୁ ଅଲକ୍ଷିତ ରହି ସେହି ପ୍ରକୃତିହିଁ ମାନବକୁ ଯୌବନରେ ଯେପରି ଶକ୍ତିଟିଏ ଦେଇଥିବାରୁ ମାନବ ଯାହା କିଛି କରିଥାଏ । ଉଦ୍ଧତ ଯୌବନରେ ପ୍ରକୃତିଦତ୍ତ ଉନ୍ମାଦନା ଅସିଗଲେ, ମାନବ ଅଗରେ ସେହି ପ୍ରକୃତି ଏପରି ନିଜର ସୌନ୍ଦର୍ଯ୍ୟ ବିକାଶ କରି ପ୍ରତିକୃତି ଦେଖାଇ

ହାବ ଭାବ, ଇଙ୍ଗିତ, ଭଙ୍ଗି, ଅପାଙ୍ଗ ବୀକ୍ଷଣ, ଜୃମ୍ଭିତ, ନାସାକୁଞ୍ଚନ, ହାବ, ଭାବ, ମନ୍ଦସ୍ମିତ ପାଦାଙ୍ଗୁଳିରେ ଭୂରେଖା, ଦନ୍ତଲଗ୍ନ ବସ୍ତ୍ରାଞ୍ଚଳ ଇତସ୍ତତଃ ବଙ୍କିମ ମୁଖ, ଊର୍ଦ୍ଧ୍ୱ ବାହୁରେ ବାରମ୍ବାର ଅବଗୁଣ୍ଠନ ଗ୍ରହଣ, ନତବଦନରେ ତୃଣାଦି ଛେଦନ, ସାଭିଳାଷ ଭୂୟୋଃବଲୋକନ ସଙ୍କୋଚ ମୁଖାବର୍ତ୍ତନ, ସସ୍ମିତ ନଖପାଦ ଦୃଷ୍ଟି, ସୁରୁଚିରେ କେଶ-ବିନ୍ୟାସ ଭଙ୍ଗି,ତାମ୍ବୂଳ ରଞ୍ଜିତାଧର, ରୁଚିରତର ହେମାଙ୍ଗ ଭୂଷଣ, ଅର୍ଦ୍ଧଦୃଷ୍ଟ ଉରଃଶୋଭା, କିଙ୍କିଣୀଯୁକ୍ତ କଟିରସନା, ବାହୁଟି କଙ୍କଣଯୁକ୍ତ ବାହୁଯୁଗଳ, କଜ୍ଜଳ ରେଖା ରଞ୍ଜିତ ନେତ୍ର ନୀଳୋତ୍ପଳ, ବକ୍ରତା ବ୍ୟଞ୍ଜକ ଗୂଢ଼ ବଚନ. ମିଥ୍ୟା ବ୍ୟଞ୍ଜିକା ନିଷେଧୋକ୍ତି ଏବଂ ମନୋହର ବସ୍ତ୍ରାଭରଣାଦିରେ ଅଭିଳାଷ, ଏଥିରେ ସତେଜ ଯୌବନ ଭୁଲି ଯାଇ, ଅନ୍ୟ ସବୁ ଜାଗତିକ ବିଷୟରୁ ଅଲଗା ହୋଇ କେତେକ ଦିନପାଇଁ ରହିଯାଏ ।

ଯଦି ଉକ୍ତ ସମୟରେ ସଦ୍‌ଗୁରୁଙ୍କ ନିକଟରେ ରହି, ଶାସ୍ତ୍ରନୀତି, ଧର୍ମନୀତି, ସାମାଜିକ ନୀତି, ସ୍ୱାସ୍ଥ୍ୟ ନୀତି, ରାଜନୀତି, ଓ ଶିଳ୍ପାଦିର ଭିତ୍ତିରେ ଉପଯୁକ୍ତ ଶିକ୍ଷାଲାଭ କରାଯାଇ ଥାଏ, ତେବେ ଏ ଯୌବନ କିଛି ହେଲେ ଅମଙ୍ଗଳ ନକରି, ଅଧିକରେ ଲୋକର କଲ୍ୟାଣ ସାଧନରେ ପରମ ମିତ୍ରରୂପେ କାର୍ଯ୍ୟ କରିଥାଏ । ସେ ଗୃହୀ ହେଲେ ମଧ୍ୟ ଯୌବନ ଧକ୍‌କାରେ ବ୍ୟଥିତ ନୋହି ଯଥା ନିୟମରେ ଆଶ୍ରମ ବ୍ୟବସ୍ଥା ଚଳାଇ, "ନୈଷ୍ଠିକ ବ୍ରହ୍ମଚାରି" ଆଖ୍ୟା ପାଇଥାଏ । ସୁତରାଂ ସୁସ୍ଥ, ସବଳ, ସତେଜ ସୁନ୍ଦର, କର୍ମଦକ୍ଷ, ଶରୀରରେ ଜୀବିତ କାଳ ପ୍ରକୃତିର ନିୟମରେ ସୁଖରେ କଟାଇଦିଏ । କିନ୍ତୁ ପ୍ରକୃତି ଅବସ୍ଥା ବଦଳିଗଲା ପରି ବ୍ୟକ୍ତିର ମତଗତି ବି ମଧ୍ୟ ବଦଳିଯାଏ । ଅବସ୍ଥା ଭେଦରେ ମାନବର ମତି ତ କେବେହେଲେ ସମାନ ରହିପାରେ ନାହିଁ । ବିଶେଷରେ ଯୌବନରେ । କଳିଥିବ

ନଥିବା ଘୋଡ଼ା ଯେପରି ଅପନ୍ତାରେ ଧାବମାନ ହୁଏ, ସେହିପରି ଯୌବନମତ୍ତର ଗତି କେତେବେଳେ କେଉଁ ଦିଗରେ ଯେ ଯାଏ, ତାହା ଏ ମର ଜଗତରେ କାହାରିକି ଅବଗତ ନାହିଁ । ଅତଏବ ମାନବ ଯୌବନର ତାଡ଼ନାରେ ସକଳ ପ୍ରକାର ନୀତିର ଅବମାନନା କରି, ସ୍ୱୀୟ ଇଷ୍ଟ ସିଦ୍ଧି ନିମନ୍ତେ ପ୍ରତିକ୍ଷଣରେ ଜାଗ୍ରତ ହୋଇ ରହେ । କିନ୍ତୁ ସେ ଜାଗ୍ରତ ପରିଣାମରେ କି ଯେ ଅନାକାଂକ୍ଷିତ ବିପଦର ସମ୍ମୁଖୀନ କରି ମାନବକୁ ରଖିଦେବ, ତାହା ସେ ବିଂକ୍ର ଉନ୍ମାଦନାର ବଶବର୍ତ୍ତୀ ହୋଇଥିବାରୁ ତାତ୍କାଳିକ ରମଣୀୟତାରେ ମୁଗ୍ଧ ହୋଇ ସ୍ୱୀୟ ସର୍ବସ୍ୱ ହରାଇ ବସେ । ଏହି ଆଚରଣ ଦେଖି, ପ୍ରକୃତ କଥା ନ କହିଲେ ସୁଦ୍ଧା ହୃଦୟରେ ଅବଶ୍ୟ ଉପହାସ କରୁଥିବ । କଥାରେ ଯଦି ପ୍ରକୃତ, ମାନବକୁ ଏହା ସବୁ କହୁଦିଅନ୍ତା ତେବେ ତ ମାନବ ଏ ଅବସ୍ଥାରେ ମଧ୍ୟ ଶାସ୍ତ୍ରୀୟଜ୍ଞାନଜନିତ ବିବେଚନା କରି, ଏକବାରେକେ ଜିତେନ୍ଦ୍ରିୟ ହୋଇ ସମାଜ କ୍ଷେତ୍ରରେ ଦଣ୍ଡାୟମାନ ହୁଅନ୍ତା; ତେବେ ଆଉ ଏ ଧରଣୀରେ ଏତେ ଲୀଳା ଖେଳା ଦେଖାନ୍ତା କିଏ ? ଏହି ସଂସାର ସୃଷ୍ଟିରେ ସେ ମହାପ୍ରଭୁଙ୍କର ଖେଳାଦର୍ଶନୋଦ୍ଦେଶ୍ୟ ସଂସିଦ୍ଧ ହୋଇ ପାରନ୍ତା ନାହିଁ । ଅତଏବ ପ୍ରକୃତି ମାନବର ଯୌବନୋଚିତ୍ୟ ଦେଖି ହସୁଛି ସିନା ପଦେ ହେଲେ କେବେ କାହାରିକି କହୁନାହିଁ ।

ଜ୍ଞାନୀ ଓ ପ୍ରତିପନ୍ନମତି ମନୀଷିମାନେ ବହୁକାଳରୁ ଏ ଅବସ୍ଥା ବିଷୟରେ ଗଭୀର ଚିନ୍ତା କରି ଅବସ୍ଥାର ଔଚିତ୍ୟ ବିବେଚନାରେ ନାନାପ୍ରକାର ବିଧି ବ୍ୟବସ୍ଥା ଲେଖି ସମାଜର କଲ୍ୟାଣ ଉଦ୍ଦେଶ୍ୟରେ ତାହା ସବୁ ଦାନ କରି ଦେଇ ଅଛନ୍ତି । କାଳକ୍ରମେ ଯୁଗଭେଦରେ ଲୋକ ସମାଜର ମତିର ଗତି ବଦଳି ଯିବାରୁ ଏବେ ଆଉ ତାହା କିଏ

ବୁଝି ନାହାନ୍ତି; ବୁଝିଲେ ମଧ୍ୟ ତାହାକୁ ନିଜ ନିଜ ଆଚରଣରେ କେହିହେଲେ ଦେଖାଉ ନାହାନ୍ତି । ସୁତରାଂ ଏ ମର୍ତ୍ତ୍ୟଧାମରେ ଅସଂଯତ ଯୌବନ ବିଳାସ ଯୋଗୁଁ ଅସଂଖ୍ୟ ରୋଗର ଆବିର୍ଭାବ ହୋଇ, ଜନସମାଜକୁ ସର୍ବାଙ୍ଗୀନ ସୁଖଭୋଗରୁ ବଞ୍ଚିତ କରି ରଖିଛି । ଏହି ବହୁ ରୋଗାକ୍ରାନ୍ତ ଜନତା ପ୍ରଚଳିତ ଯୁଗକୁ "ପାପକ୍ଲିଷ୍ଟ ଯୁଗ" ବା କଳିଯୁଗ କହୁଛି । ପାପ କହିଲେ, ଅପର କୌଣସି ପାର୍ଥିବ ପଦାର୍ଥକୁ ବୁଝାଏ ନାହିଁ, କେବଳ "ଦୁଷ୍କର୍ମକୁ"ହିଁ "ପାପ" କୁହାଯାଏ । ଏ ଜଗତରେ ଯେ ଦୁଷ୍କର୍ମ କରେ ସେହି ପାପିଷ୍ଠ ଆଖ୍ୟା ପାଇଥାଏ । ଲୋକ ଗର୍ହଣୀୟ କର୍ମକୁ "ଦୁଷ୍କର୍ମ"ବୋଲି ବିଶ୍ୱବାସୀ କହନ୍ତି । ଯେଉଁ କର୍ମଦ୍ୱାରା ପ୍ରାଣୀ ଜଗତର ବା ଆଧ୍ୟାତ୍ମିକ ଜଗତର କୌଣସି ପ୍ରକାର କଲ୍ୟାଣ ସାଧନ ହୁଏ ନାହିଁ ତାହା ଯଦି ଦୁଷ୍କର୍ମ ନ ହୁଏ, ତେବେ ଆଉ କାହାକୁ ମନ୍ଦକର୍ମ କୁହାଯିବ ? ଅତଏବ ଧର୍ମାଦି ପ୍ରବର୍ତ୍ତନା ଦେବାପାଇଁ ପୁରାଣମାନଙ୍କର ଆବିର୍ଭାବ ହୋଇଅଛି । ପୁରାଣାଦିର ଦୃଢ଼ୀକରଣାର୍ଥ ଦର୍ଶନ ଶାସ୍ତ୍ରର ବିକାଶ । ଦର୍ଶନ ଶାସ୍ତ୍ରଯୋଗେ ଆଧ୍ୟାତ୍ମିକ ତତ୍ତ୍ୱର ବସ୍ତୁର ସିଦ୍ଧାନ୍ତ ହୋଇଥିବାରୁ ଲୋକସମାଜର ମନରେ ଐଶ୍ୱରିକ ବିଶ୍ୱାସ ଦୃଢ଼ୀଭୂତ ହୋଇଥାଏ । ଲୋକ ବିଶ୍ୱାସୀହେଲେ, ସତ୍କର୍ମ କରିବାକୁ ଉତ୍ସାହ ପ୍ରକାଶ କରି ଆଜୀବନ ଚେଷ୍ଟା କରେ । "ଫଳଂତୁ ଈଶ୍ୱରସ୍ମୃତଂ" ଫଳପ୍ରାପ୍ତି ଆଶାରେ କର୍ମ କରା ଯାଏ ନାହିଁ । ଯେହେତୁ ଫଳ ଈଶ୍ୱରାଧୀନ । ଶ୍ରୀମଦ୍ ଭଗବଦ୍‌ଗୀତାରେ ମଧ୍ୟ କୁହା ଯାଇଛି ;

"ଯତ୍କରୋଷି ଯଦଶ୍ନାସି ଯଜ୍ଜୁହୋଷି ଦଦାସିଯତ୍ ।
ଯତ୍ତପସ୍ୟସି କୌନ୍ତେୟ ତତ୍କୁରୁଷ୍ୱ ମଦର୍ପଣଂ ॥"

କର୍ମଣ୍ୟେ ବାଧିକାରସ୍ତେ ମାଫଳେଷୁ କଦାଚନ,
ମାକର୍ମ ଫଳହେତୁର୍ଭୁର୍ମାତେସଙ୍ଗୋଽସ୍ତ୍ୱ କର୍ମଣି ॥

ଏଥିରେ ଏତିକି କହାଯାଇଛି ଯେ, ମାନବ ଯାହା କରୁଛି, ଯାହା ଖାଉଛି, ଯାହା ହୋମ କରୁଛି, ଯାହା ଦାନ କରୁଛି, ଯାହା ବା ତପଃ କରୁଛି, ତାହାସବୁ କେବଳ ପରମାତ୍ମାଙ୍କୁ ଅର୍ପଣ କରିଦେବାକୁ ହେବ । ସେଥିରେ ଲୋକର ମନରେ ପ୍ରକୃତ ସନ୍ତୋଷ ଜାତହେବ । ଲୋକର ମନରେ ସନ୍ତୋଷ ଜ୍ଞାନ ରହିଲେ ଅଜ ଅସ୍ରବାତ୍ମକ ଜ୍ଞାନ ରହେ ନାହିଁ । ସୁତରାଂ ଲୋକ ସୁଖୀ ହୁଏ । ବାଲ୍ମୀକି ରାମାୟଣରେ ମଧ୍ୟ ଗୋଟିଏ ଶ୍ଳୋକରେ ଉପର କହାଯାଇଛି, ଦେଖାଯାଉ—

"ସୁଖସ୍ୟ ଦୁଃଖସ୍ୟ ନ କୋଽପିଦାତା
ପରେ ଦଦାତୀତ କୁବୁଦ୍ଧିରେଷା ।
ଅହଂକରୋମୀତି ବୃଥାଭିମାନଃ
ସ୍ୱକର୍ମ ସୂତ୍ର ଗ୍ରଥିତୋହିଲୋକଃ ॥"

ଏ ଜଗତରେ କାହାରିକି କଏ ସୁଖ ବା ଦୁଃଖ ଦେଇପାରେ ନା, ଜଣେ ଜଣକୁ ସୁଖ ବା ଦୁଃଖ ଦିଏ ବୋଲି ଭାବିବା ବିଡ଼ମ୍ବନା ମାତ୍ର । ମୁଁ ସବୁ କରି ପାରୁଛି ବୋଲି ବ୍ୟର୍ଥ ଅଭିମାନ କରିବା ଅନୁଚିତ । ଲୋକ ନିଜର କର୍ମ ସୂତ୍ରରେ ଗୁନ୍ଥା ହୋଇଥାଏ । ମନୁଜ ଅନିନ୍ଦ୍ୟ କର୍ମଯୋଗେ ଯଶ ଲଭେ, ପୁଣି ନିନ୍ଦ୍ୟ କର୍ମ ଯୋଗେ ଅପଯଶଃ ଲଭ କରେ ।

ଦୁର୍ମଦ ଯୌବନ ଭାବ ଏଥିପ୍ରତି ଦୃଷ୍ଟି ନ ଦେଇ କେବଳ ମାଲୁଶ୍ରୀ ଗୀତରେ ପୁଲକିତ ହେବା ପାଇଁ ସତତ ଉଦ୍ୟତ ହୋଇଥାଏ । ତାତ୍କାଳିକ ଆନନ୍ଦଦାୟକ ଭୋଗାଦିକ ବିବେଚନା ବଳରେ ଏହି ନଶ୍ୱର ଜୀବନ କାଳକୁ କ୍ଲେଶ ବହୁଳ କରାଏ । ଅତଏବ

ପର ଦୁଃଖ କାତର ସୁଧୀବୃନ୍ଦ ତାହାର ପ୍ରତୀକାର ଉଦ୍ଦେଶ୍ୟରେ ଗ୍ରନ୍ଥାଦି ରଚନା କରି ସଦୁପଦେଶର ସରଳ ସରଣୀ ଦେଖାଇ ଯାଇଛନ୍ତି । ଯେପରି ସେହି ଉପଦେଶଗୁଡ଼ିକ ଶିକ୍ଷାଳୟମାନଙ୍କରେ ନିୟମିତଭାବେ ଯୁବକମାନଙ୍କୁ ପଢ଼ାଯିବ, ସେଥିପାଇଁ ବିଧିବିଧାନର ବ୍ୟବସ୍ଥା ରହିଲେ, ଉଦ୍ଧତ ଯୌବନୋନ୍ମାଦନାକୁ ସହଜରେ ଅଯତ୍ତ କରିହେବ । ବର୍ତ୍ତମାନ ଯୁଗରେ ଜ୍ଞାନୀମାନେ ମଦନଶାସନକୁ ଟେରକାଳ ଅକ୍ଷୁଣ୍ଣ ରଖିବା ମାନସରେ ମନ୍ମଥଙ୍କ କ୍ରିୟାକଳାପ ବର୍ଣ୍ଣନା କରି ଗ୍ରନ୍ଥମାନ ଲେଖି ଦେଇ ଅନ୍ୟାନ୍ୟ ସକଳ ନିନ୍ଦା କାବ୍ୟଗୁଡ଼ିଏ ତହିଁରେ ଗ୍ରନ୍ଥିତ କରି ବଣିଲ ଶିକ୍ଷା ମନ୍ଦିର ମାନଙ୍କରେ ତାହା ଯେପରି ପାଠ୍ୟ ରୂପେ ଗୃହୀତ ହୁଏ, ସେପରି ସୁବନ୍ଦୋବସ୍ତ କରି ରଖାଇ ଦେଇଛନ୍ତି । ତାହାକୁ ଶିକ୍ଷକମାନେ ଅନୁପଯୋଗୀ ବୋଲି ଜାଣିଲେ ମଧ୍ୟ ସରକାରୀ ବିଧିଲଙ୍ଘନ ଭୟରେ ବାଧ୍ୟ ହୋଇ ତାହା କେବଳ ପଢ଼ାଉଛନ୍ତି । ତଦ୍ଦ୍ୱାରା ଛାତ୍ରମାନଙ୍କର କେତେକ ଦେଶ ଓ ବିଦେଶ ସମ୍ବନ୍ଧୀୟ ଜ୍ଞାନ ଜନ୍ମେ ସତ କିନ୍ତୁ ଧର୍ମ ସମ୍ବନ୍ଧରେ ପଦେ ହେଲେ ପିଲେ ନଶୁଣିବାରୁ ସେମାନଙ୍କ ମନରେ ଏକବାରେକେ ଧର୍ମଧାରଣା ରହୁନାହିଁ । ସୁତରାଂ ଏକମାତ୍ର ସ୍ୱକର୍ମନିଷ୍ଠ ଭଯୁକ୍ତତା ଅଭ ଧାର୍ମିକ, ନୈତିକ, ସାମାଜିକ ବିଷୟ ସେମାନଙ୍କ ମନରେ ସ୍ଥାନ ପାଉନାହିଁ । ଲୋକ ହୃଦୟରେ ଧର୍ମାଦି ଭୟ ନଥିବାରୁ ଅନାଗୃଷ୍ଟ, ଅତ୍ୟାଗ୍ରୃଷ୍ଟ ଏବଂ କୁଟିଳ ବୃଦ୍ଧି ହୋଇ ଲୋକେ ନାନାଦି ଦୁଷ୍କାର୍ଯ୍ୟ କରିବାରେ ମନପ୍ରାଣ ଢାଳି ଦେଉଛନ୍ତି । ନର୍ଭୟମାନବ ସ୍ୱାର୍ଥପରବଶ ହୋଇ, ନିନ୍ଦା ବା ଗର୍ହଣାଦିରେ ଦୃଷ୍ଟିପାତ ନକରି, ମନଇଚ୍ଛା କର୍ମ କରି ଯିବା ଦ୍ୱାରା କୁଳ ଓ ସମାଜଠାରୁ ଆରମ୍ଭ କରି ଦେଶ ବିଦେଶ ଯାଏଁ ସର୍ବତ୍ର ମହାଘୋର ଦ୍ୱନ୍ଦ୍ୱ ଉପଜାତ ହେଉଅଛି, ଏହାର ମୂଳରେ କେବଳ ଧର୍ମ ବିଶ୍ୱାସର ଅଭାବ ରହି ଜନସମାଜରେ ସକଳ ଦୁର୍ଘଟନା ଦେଖାଦେଇ କାଳର କରାଳ ବ୍ୟାଦନ ମୁଖ ଆଡ଼କୁ ଓଃାର

ନେଇ ପାରନ୍ତି । ଅତଏବ, ଦେଶର ଯୁବଶକ୍ତି ଏକମାତ୍ର ରାଜନୈତିକ ଜ୍ଞାନସମ୍ପନ୍ନ ହେଲେ ଦେଶରେ ଶାନ୍ତି ସ୍ଥାପିତ ହୋଇ ପାରିବ ନାହିଁ । ତା'ସଙ୍ଗେ ସଙ୍ଗେ ଧର୍ମ, ସମାଜ, କୁଳର ନିୟମ ଆଦି ମଧ୍ୟ ଦୃଷ୍ଟି ରଖି ଅଧ୍ୟୟନ କରିବା ଉଚିତ । ସେହି ସବୁ ଦିଗରେ ଦୃଷ୍ଟି ଦେଇ, ପାଠ ସମାପ୍ତ କଲେ, ସକଳ ସୁନୀତି ନିୟନ୍ତ୍ରିତ ହୋଇ ସମାଜ ବା ଦେଶକୁ ସୁଗଠିତ କରିହେବ । ନୋହେଲେ କ୍ଷଣକେ ଜଣ ଜଣଙ୍କର ବିଭିନ୍ନ ବୁଦ୍ଧି ଅନୁସାରେ ନାନାବିଧ ନବନବ ନୀତି ପ୍ରଣୀତ ହୋଇ ଦେଶରେ ବା ସମାଜରେ ନାନା ଉପଦ୍ରବ ସୃଷ୍ଟି କରି, ଦେଶକେ ମହା ଅଶାନ୍ତି କ୍ରମଶି ରାଜ୍ଜୀ କରି ଥୋଇ ଦିଆଯିବ ।

ମାନବଯୌବନରେ ହିଁ ସକଳ ପ୍ରକାର ନୀତି ଶିକ୍ଷାର ଅଧିକାରୀ ହୁଏ । ଏହି ଅବସ୍ଥାଟିରେ ଯେଉଁ ନୀତି ଗୁରୁଙ୍କର ଶିକ୍ଷା ଦିଆଯାଏ, ତାହା ଜୀବନ କାଳଟି ଯାକରେ ପରିପାଳିତ ହୋଇଥାଏ ଯଦି ଏ ଉଦ୍ଭିନ୍ନ ଯୌବନ ସମୟରେ କେବଳ ଆଦିରସ ପ୍ରଧାନ ଗ୍ରନ୍ଥଗୁଡ଼ିଏ ପଢ଼ାଯାଏ, ତେବେ ସ୍ୱତଃ ଲୋକର ମନରେ ଉତ୍ତେଜନା ଆସିଥିବା ସମୟରେ ଏ ଆଦିରସପୂର୍ଣ୍ଣ ଗ୍ରାନ୍ଥିକ ବିଷୟ ଅଧିକତର ଉତ୍ତେଜିତ କରିବ ନାହିଁକି ? ସର୍ବଦା ଉତ୍ତେଜିତ ହେବା ଲୋକ ସତ୍କାର୍ଯ୍ୟରେ ମନ ଦେଇ ପାରିବକି ? ଅଧିକନ୍ତୁ ଲୋକଙ୍କୁ କାମାନ୍ଧ କରାଇ ଦେବେହେଲେ ସୁପଥ ଦେଖାଇ ଦେବ ନାହିଁ । ଫଳରେ ରାଜନୀତି ବହୁତର କଷ୍ଟ ଅନୁଭବ କରି, ନିଜର ବହୁରୂପତ ଦେଖାଇବାକୁ ବାଧ୍ୟ ହେବ । ରାଜନୀତିର ବହୁରୂପତା ଯୋଗେ ଜନସମାଜ ଅତ୍ୟନ୍ତ କ୍ଲେଶ ଅନୁଭବ କରିବ ।

ସେଥିପାଇଁ କହାଯାଏ ଯେ, ଆଗରୁ ପୂର୍ବଦୃଷ୍ଟି ରଖି କାର୍ଯ୍ୟ କରିବା ସମୁଚିତ । ଅବସ୍ଥାମାନଙ୍କ ମଧ୍ୟରେ ଯୌବନ ହିଁ ସବ କର୍ମ ଦକ୍ଷତା ଆଣିଦିଏ । ଏହି ଅବସ୍ଥାକୁ ଜାଗ୍ରତ ଦୃଷ୍ଟି ଦେଇ,

ଜନକ, ଅଭିଭାବକ, ଅଧ୍ୟାପକ, ଓ ଗ୍ରନ୍ଥକର୍ତ୍ତାମାନେ ଯଦି ସତ୍ପଥରେ ସୁପରିଚାଳିତ କରିଦିଅନ୍ତି, ତେବେ ଯୁବକ ଅନାୟାସ ଚିତ୍ତରେ ସତ୍ପଥ ଗାମୀ ହୁଏ । ସଦାଚରଣ ଓ ସତ୍କାର୍ଯ୍ୟ ଯୋଗେ ସ୍ଥାବରାସ୍ଥାବର ଜଗତର ସର୍ବତୋଭାବରେ ଉପକାର ହିଁ ସମ୍ପାଦିତ ହୋଇଥାଏ । ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତିର ତାହା କେବଳ କର୍ତ୍ତବ୍ୟ ହୁଏ । ସତ୍କାର୍ଯ୍ୟରୁ ବହୁଧନ ଉପାର୍ଜିତ ହେଲେ ଧର୍ମ କାର୍ଯ୍ୟରେ, ଶିକ୍ଷାନୁଷ୍ଠାନାଦିରେ ତାହା ବ୍ୟୟିତ ହୁଏ । ଧର୍ମରେ ବିଶ୍ୱାସ ନରହିଲେ ଅଧର୍ମାର୍ଜିତ ଅର୍ଥ ସ୍ୱାର୍ଥସିଦ୍ଧି ନିମିତ୍ତ ସ୍ୱଗୃହରେ କେବଳ ସଞ୍ଚିତ ହୋଇ, ସମୟରେ "କୃପଣସ୍ୟ ଧନଂ ଯାତି ବହ୍ନିତସ୍କର ପାର୍ଥିବୈଃ" କୃପଣ ବା ସ୍ୱାର୍ଥାନ୍ଧ ଲୋକର ଅର୍ଜିତ ଧନ ସଞ୍ଚିତ ରହି, ଅଗ୍ନିଦଗ୍ଧ, ବା ଚୌର୍ଯ୍ୟାପହୃତ, ଅଥବା ରାଜଭଣ୍ଡାରକୁ ଯାଏ । ଯଦି ଯୌବନରେ ଲୋକ ସଦ୍‌ଜ୍ଞାନାଲୋକରେ ସତ୍ପଥ ଦେଖିପାରେ, ତେବେ ତାର ପରିଶ୍ରମୋପାର୍ଜିତ ଧନକୁ ସେ ସତ୍କାର୍ଯ୍ୟରେ ବିନିଯୋଗ କରିବ ଛାଡ଼ିବନାହିଁ । ଅତଏବ ଜ୍ଞାନାର୍ଜନ ପ୍ରଥମ କର୍ତ୍ତବ୍ୟ । ବ୍ୟକ୍ତି ଜ୍ଞାନଲାଭ ନକରିଲେ ଅବନତ ହୁଏ । ଜ୍ଞାନସମ୍ପନ୍ନ ସର୍ବତ୍ର ପୂଜିତ ହୁଏ । ସତ୍ପାତ୍ର ବିବେଚନାରେ ଲୋକେ ଉପହାର ସ୍ୱରୂପ ବହୁଧନ ଦେଇଥାନ୍ତି । ସତ୍କାର୍ଯ୍ୟରେ ସେହି ଧନକୁ ଜ୍ଞାନୀମାନେ ଲଗାଇ ଧର୍ମୋପାର୍ଜନ କରନ୍ତି । ଧର୍ମହେତୁରୁ ଐହିକ ଓ ପାରତ୍ରିକ ସୁଖଶାନ୍ତି ମିଳେ ।

ଅତଏବ ଧର୍ମାର୍ଥ-କାମ,-ମୋକ୍ଷ ରୂପ ଚତୁର୍ବର୍ଗଫଳ ସାଧନୀଭୂତ ଏକମାତ୍ର ବିଦ୍ୟା । ସେହି ବିଦ୍ୟାକୁ ବିକୃତ ରୂପଦେଇ, ଶିକ୍ଷାଦେଲେ, ଛାତ୍ରର ବୁଦ୍ଧି ବିକୃତ ଘଟେ, ଯଦି ସର୍ବତୋମଙ୍ଗଳ ଦୃଷ୍ଟିରେ ବିଦ୍ୟାର ନିସର୍ଗ ସୌନ୍ଦର୍ଯ୍ୟ ଦେଖାଇ, ଶିକ୍ଷା ଦିଆଯାଏ, ତେବେ ତାହା ସକଳ କ୍ଷେତ୍ରରେ ଆଦରଣୀୟ ହୋଇ ରହେ । ଏକମାତ୍ର

ଉତ୍ସୁକ୍ୟସମସ୍ତ ଯୌବନ, ଶିକ୍ଷାରେ ତାହା ପରିମଣ୍ଡିତ ହୁଏ । ଲୋକର ଗୁଣ ସୌନ୍ଦର୍ଯ୍ୟକୁ ପରମ ରମଣୀୟ କରେ, ବ୍ୟକ୍ତିକୁ ଜଗତରେ ପୂଜାର୍ହ କରି ରଖେ । ଶିକ୍ଷା ଯଦି ବିକୃତ ହୋଇଯାଏ, ତେବେ ଶିକ୍ଷାର୍ଥୀ ଅଜୀବନ ଅସମ୍ମାନିତ ହୋଇ କଳଙ୍କିତ ଜୀବନ କଟାଏ । ପ୍ରଥମ ଯୌବନରେ ଲୋକ ସଚ୍ଛିକ୍ଷା ପ୍ରାପ୍ତ ହୋଇଥିଲେ, ମଧ୍ୟମ ବା ଅନ୍ତିମ ଯୌବନରେ ଉତ୍ତେଜନାର ବଶବର୍ତ୍ତୀ ହୋଇ ରହିବା ସହଜନୁହେ । ଲୋକ ସ୍ୱୀୟ ଶାସ୍ତ୍ରୀୟ ଜ୍ଞାନ ଯୋଗେ ଉଚିତାନୁଚିତ ବିବେଚନା କରିବାର ଶକ୍ତି ସଞ୍ଚୟ କରିଥାଏ । ସୁତରାଂ ତାହା ସେ କରି, ଉତ୍ତେଜନାର ଦମନକରି ସନ୍ମାର୍ଗରେ ଚାଳିତ ହୁଏ ।

ନଦୀର ପ୍ରଖର ପ୍ରବାହ ଅବାରିତ ନିମ୍ନଗତି କଲାପରି, ନବଯୌବନୋନ୍ମାଦନା ଏପରି ପ୍ରେରଣା ଦିଏଯେ, ମୁହୂର୍ତ୍ତିକେ ଲୋକର ଭାବ ବଦଳିଯାଇ, ନିମ୍ନଗତି କରିବାକୁ ଠିକଏ ହେଲେ ସେ ପଛାଏ ନାହିଁ । ସକଳ ବିପଦର କାରଣସ୍ୱରୂପ ସେହି ନିମ୍ନଗତି ବୋଲି, ଜାଣିସୁଦ୍ଧା ଅଗ୍ନିରେ ପତଙ୍ଗପରି ତହିଁରେ ସେ ପଡ଼ିଯାଏ । ନବଯୌବନରେ ଲୋକ ଅଗ୍ନିପତଙ୍ଗପ୍ରାୟ ଆଚରଣ ନ କରିବାପାଇଁ ଅବହମାନ କାଳରୁ ଗୁରୁପରମ୍ପରାର ସତ୍‌ଶିକ୍ଷାର କଠିନତର ବ୍ୟବସ୍ଥା ହୋଇ ଆସୁଥିଲା, ମନୁଷ୍ୟର ଭାବବିବର୍ତ୍ତନ ଯୋଗେ ସମ୍ପ୍ରତି ତାରସମ୍ପୂର୍ଣ୍ଣ ବିପରୀତ ଶିକ୍ଷାରେ ସମାଜର ମନ ଘୋଟକତୁଲ୍ୟ ଧାଇଁଚାଲିଛି । ଉଦ୍ଧତ ଯୌବନ ଅସନ୍ମାର୍ଗ ଅବଲମ୍ବନକରି ଜଗତରେ ସକଳ ପ୍ରକାର ବ୍ୟଭିଚାର ଘଟାଇ, ଯୁଦ୍ଧବିଗ୍ରହାଦି ଜନିତ ବିବିଧ ଦୁଃଖ ଯାତନା ଭୋଗି କଳକାପର ଉପାୟଶୂନ୍ୟ ନେତ୍ରରେ ଉପରକୁ ଚାହିଁ ବସୁଛି । ଏହା ଏଯୁଗରେ "ଅପ୍ରିୟସତ୍ୟ" । ଏହା ଶୁଣିଲେ ଏଯୁଗ ବନ୍ଧୁ ନୟନରେ ଚାହିଁ ସୁତୀକ୍ଷ୍ଣ ବାଗ୍‌ବାଣରେ ହୃଦୟ

ର୍ଜିତ କରିଦେବ । ପୁଣି ଯୁଗକୁ ଡ଼ର ଏହା ନକହୁଲେ ଚଳୁନାହିଁ । ଲୋକଙ୍କର ଯଷ୍ଟିରେ ମଙ୍ଗଳ ହେବ, ଯୁଗଭିତ୍ତିରେ ତାହା ନଲେଖିବା ଅନୁଚିତ ହେବ । ଆଧୁନିକ ଶିକ୍ଷାର ପ୍ରଭାବରେ ସର୍ବଉପକାରକ ଗୃହସ୍ଥାଶ୍ରମ ଏଣିକି ଆଉ ରହିପାରିବ ନାହିଁ, ଯୁବକ ଯୁବତୀ ଯେଉଁ ଶିକ୍ଷାର ପ୍ରଭାବରେ ପାଶ୍ଚାତ୍ୟ ଢଙ୍ଗରେ ସାଜି ହୋଇ ବିଳାସୀ ବିଳାସିନୀ ପାଲଟି ଯାଉଛନ୍ତି । ତେବେ ଏ ଗୃହର ମମତା ଆଉ ରହିବ କାହାଠାରେ? ଏଣିକି ସାର୍ବଜନୀନ "ଭୋଜନାଳୟ" ହେବ, ଯୁବଜନର "ବିଳାସ ମନ୍ଦିର" ଆଉ ଗୃହ ସଂସ୍ଥା ରଖି, ଏତେ ଦହସଂତ ହେଉଛି କିଏ? । ରେଗାଦ୍ ସୂତକାନ୍ତ କାର୍ଯ୍ୟ ପାଇଁତ ଶିକ୍ଷା ମନ୍ଦିର (ଡାକ୍ତର ଖାନା) ରହିଲା, ସନ୍ତାନ ପାଳନାଗାର ଗ୍ରକାନୀତ ବନ୍ଦନ କରିବା ପାଇଁ ବିଧିବିଧାନ କରିହେଲାଣି । ସେଥିଲାଗି ଭୋକାଲେ ନଥିବା ବରଶୂନ୍ୟ ଏବେ ବାହାର ସାମାଜିକମାନଙ୍କୁ ଅକୁଳିତ ଓ ଆତଙ୍କିତ କରିଦେଲାଣି । କେତେଦିନ ଅବା ସମାଜ ଏପରି ଆତଙ୍କିତ ହୋଇ ତିଷ୍ଠି ରହିବ? ଗୃହସଂସାର କେବଳ ଯୁବକ ଯୁବତୀଙ୍କର ସିନା, ତେଣିକି ବାନପ୍ରସ୍ଥାଦିର ବ୍ୟବସ୍ଥା ପାଳିତ ହୁଏ । ଚତୁର୍ବର୍ଗ ଫଳଦାୟକ, ସଂସାର ସ୍ଥିତି କାରକ, ସର୍ବୋପକାରକ ଓ କୁଳରକ୍ଷକ ଗାର୍ହସ୍ଥ୍ୟ ସମ୍ବିଧାନ ଆଜି କି ଫେଲ ନୋହୁଛି ? ଧନ୍ୟ ଯୁଗ ତୋ ମହିମାକୁ ! ଖେଳଘରତୁଲ୍ୟ କ୍ଷଣକ ପାଇଁ ସଂସାରକୁ ଆସି ପରିମିତ ସମୟ ମଧ୍ୟରେ ଛ' ଗୋଟି ଅବସ୍ଥା ଭୋଗକରି ମାନବ ଅନ୍ତିମ ଖେଳ ଦେଖାଇ ଚିରବିଦାୟ ନେଇ ସଂସାରରୁ ଚାଲିଯାଏ, ଏହା କିଛି ମିଛନୁହେଁ, ଦୈନନ୍ଦିନର ପ୍ରତ୍ୟକ୍ଷ ଘଟନା । କ୍ଷଣିକ ଉନ୍ମାଦନାର ବଶବର୍ତ୍ତୀହୋଇ ମାନବ ଯାହାକି ଶରଚରିତ ସେଥିରୁ ବଞ୍ଚିତ ହୋଇ ଯାଉଛନ୍ତି, ଏହା ତାର ଦୁର୍ଭାଗ୍ୟର ବୋଲି କାହାର ବିବେଚନା ହେବ ? । ବାଲ୍ୟ, କୈଶୋର ଓ ପୌଗଣ୍ଡ ଅତୀତ ଗର୍ଭରେ ଲୀନ ହେଲା ପରେ, ଏ ଯୌବନ ମଧ୍ୟ ଦିନେ ତାହାର ଗର୍ଭରେ ଲୀନହୋଇ

ଥିବ । ସେତେବେଳେ ଅନୁତାପାନଳରେ ଦଗ୍ଧ ହେଲେ ଫଳ ହେବ ଦୁଃଖ । ଅତଏବ ଯୌବନକୁ ପ୍ରଥମରୁ ସୁସଂଯତ ଭାବରେ ଶିକ୍ଷା ପ୍ରଦାନକରି ସୁପଥରେ ଚାଲିବାପାଇଁ ଶିକ୍ଷା ପ୍ରଣୋଦିତ କରାଇ ଦେଇଥିଲେ ପରିଣାମରେ ପ୍ରମାଦୀ ହେବାକୁ ପଡ଼େନାହିଁ ।

ଆଗରୁ ଜାଗ୍ରତ ନୋହି, ଅବହେଳାରେ ସେ ଆଡ଼େ ଦୃଷ୍ଟି ନ ଦେଲେ, ବଳ ବପୁ ସବୁ ହରାଇ ବସିବାବେଳେ ବିଭିନ୍ନ ପ୍ରକାର ରୋଗ ସେହି ସମୟରେ ଶରୀର ଆକ୍ରମଣ କରିବାକୁ ତ କେତେ ଦିନରୁ ଟାକି ବସିଥିବେ । ସୁବିଧା ସୁଯୋଗ ଟିକିଏ ପାଇଲେ, ସେ ରୋଗମାନେ କ୍ଷଣେ ସୁଦ୍ଧା ବ୍ୟର୍ଥ ନ କରି, ଶରୀରକୁ ଆକ୍ରମଣ କରି ନାନା କଷ୍ଟ ଦେବେ । ସେତେବେଳେ ଲୋକ ରୋଗ କବଳରୁ ମୁକ୍ତ ହେବାକୁ ଚେଷ୍ଟା କରିବ ବା ଧର୍ମ ଆଡ଼େ ମନ ଦେଇ ବସିବ ? "ଚୋରେ ଗଲେ ବା କମୁ ସାବଧାନ°" ଚୋର ପଶି ଘରୁ ସର୍ବସ୍ୱ ଅପହରଣ କରିନେଲା ଉତ୍ତାରୁ ଗୃହମେଧୀ ବିଶେଷ ଜାଗ୍ରତ ଦୃଷ୍ଟି ଦେଲେ, ଆଉ କି ପ୍ରୟୋଜନ ହେବ ? । ସୁତରାଂ ସକଳ କର୍ମଦକ୍ଷ ଯୌବନରେ ମାନବ ଯଦି ଅସଂଯତ ହୋଇ ଅବସ୍ଥାଟିକୁ ଉଦ୍ଧତ ଭାବେ କଟାଇଦିଏ, ତେବେ ତାହାର କି ପରିଣାମ ସେହି କେବଳ ଭୋଗ କରିବାକୁ ବାଧ୍ୟ ହୁଏ । ଅନ୍ତିମକାଳ କେବେ ତାହାର ସୁଖପ୍ରଦ ନୁହେ । ଯେ କୌଣସି ପ୍ରକାରେ ହେଉ ନିଶ୍ଚୟ ଦୁଃଖ ଯନ୍ତ୍ରଣା ଭୋଗିବାକୁ ହେବ । ସେଥିଲାଗି ଯୋଗୀ ବା ମୁନି ଋଷିମାନେ ଅବଶ୍ୟମ୍ଭାବୀ ଅନ୍ତିମ ଦୁଃଖର ଉପଶମ କରିବା ମାନସରେ ସମାଜଗତ ଆଶ୍ରମାଦିର ବ୍ୟବସ୍ଥା କରି ଦେଇଥିଲେ ।

ସୁଚତୁର କଳିଯୁଗ ପୂର୍ବଯୁଗ ନିୟମକୁ ଉପେକ୍ଷା କରିଦେଇ, ବର୍ତ୍ତମାନ ଏ ଯୁଗରେ ନବନବ ସଜ୍ଜା ସଜ୍ଜିତ "ଶିକ୍ଷାଳୟ"

" ଚିକିତ୍ସାଳୟ "  " ଭୋଜନାଳୟ " ପ୍ରତିଷ୍ଠିତ ହେବାଦ୍ୱାରା ଲୋକମାନଙ୍କର ସର୍ବବିଧ ଉପକାର ସଂସାଧିତ ହେଉଥିବା ସତ୍ତ୍ୱେ ଆଉ ଗୃହସ୍ଥାଦି ଆଶ୍ରମ ବ୍ୟବସ୍ଥାର ଆବଶ୍ୟକତା କେଉଁଠି ରହିଲା ? ଅତଏବ, ଏ ଯୁଗ ଆଶ୍ରମ ସକଳର ଲୋପ ସାଧନ ପାଇଁ ବିଧିବିଧାନ କରି ଥୋଇ ଦେଉଛି ! ।

ବାସ୍ତବିକ ଘଟନା ଅନ୍ତର୍ଦୃଷ୍ଟି ଯୋଗେ ଦେଖିଲେ ଜଣାଯାଏ ଯେ, ଯୁଗୋଚିତ ରାଜନୈତିକ ଚିକିତ୍ସାଳୟାଦିରେ ଭାରତୀୟ ଗୃହିଣୀ କୋଟୀ ସନ୍ତାନ ଗଣର ସକଳ ପ୍ରକାର ସଂସ୍ଥା, ଚିକିତ୍ସା ବା ଭୋଜନାଳୟାଦିରେ କେବେହେଲେ ସମାହିତ ହୋଇ ପାରିବ ବୋଲି, କିଏ ବା ବିଶ୍ୱାସ କରିବ ? । ଯୁଗ ରାଜନୀତି ସୁବିଚାର କରି, ଯେତେ ଯେତେ ଯତ୍ନ କରୁ ପଛକେ ତହିଁରେ କେବେହେଲେ ସଫଳ କାମ ହୋଇ ପାରିବ ?

ରାଜନୀତିର ବହୁରୂପତା ପ୍ରସିଦ୍ଧି ପୂର୍ବରୁ ଥିବାରୁ ଦିନେ ଏହାର ରୂପ ବଦଳିଯିବ । ଅତଏବ କୁହା ଯାଉଛି ଯେ, କ୍ଷଣଭଙ୍ଗୁର ସଂସାରରେ ସର୍ବୋପକାରକ ଯୌବନ ସମ୍ପତ୍ତିକୁ ମନୁଷ୍ୟ କ୍ଷଣେହେଲେ ଅପବ୍ୟୟ ନ କରିବା ପାଇଁ ଦୃଢ଼ ପ୍ରତିଜ୍ଞ ହେଉ । ତେବେ ଯାଇ ଏ ମର୍ତ୍ତ୍ୟରେ ନରଜନ୍ମ ସାର୍ଥକ ହେବ । ଅନ୍ୟଥା ହେଲେ ଏ ଦୁର୍ଲ୍ଲଭ ଜନ୍ମ ବ୍ୟର୍ଥ ହୋଇଯିବ । ପଶୁ, କୀଟ, ପତଙ୍ଗ ପରି, ଏ ସୁମନୋରମ ଶରୀର ଛାଡ଼ି ଜୀବାତ୍ମା ଚାଲିଯିବ । ଭଗବାନଙ୍କ କୃପାରୁ ଏ ଯୁଗରେ ଯୌବନରେ ସଦ୍‌ଜ୍ଞାନ ହେଉ, ପ୍ରାଣି ଜଗତ ଚିର ସୁଖୀ ହେଉ ।

---

# ପ୍ରୌଢ଼

ଅଦୃଷ୍ଟଙ୍କର ଅବିରାମ ଗତି ଚାଲିଛି । ସେହି ଗତି ପଥରେ କେହି ତ ବାଧା ଦେଇ ପାରିନାହାନ୍ତି, ବା ପାରିବେନାହିଁ । ନିୟତି ନିବନ୍ଧନକୁ ମର୍ତ୍ତ୍ୟମାନବ ଅବା କିପରି ସାହସ କରିବ, ଲଙ୍ଘନ କରିବାକୁ । ଯଦି ତାହା କରିବାକୁ ମାନବ ଇଚ୍ଛା କରେ ତେବେ ତାର ଦୁଃସାହସ କେବଳ ବୋଲିବାକୁ ହୁଏ ।

ଦିନ ପରେ ରାତି ତ ସୌର ଗତିରେ ଏକାପରି ଚାଲିଛି । ସେଥିରେ ପ୍ରତି ମୁହୂର୍ତ୍ତରେ ପ୍ରାଣୀ ଜନ୍ମୁଛି, ପୁଣି ସଂସାର ଛାଡ଼ି ମଧ୍ୟ ଚାଲି ଯାଉଛି । ସେହି ପ୍ରାଣୀର ଅବସ୍ଥାଚକ୍ରଟି ଗୋଟିଏ ରେଖା ଧରି ଯାଉଛି, ସେଥି ଅନ୍ୟ ଗୋଟିଏ ରେଖା ଭୁଲିଇ ପାରିବ ନାହିଁ । କେହି ଅବା ଅବସ୍ଥାଚକ୍ରର ଭୂମି ମଧ୍ୟରେହିଁ ମର୍ତ୍ତ୍ୟ ଛାଡ଼ିଯାଏ, କିଏ ବା ସମ୍ପୂର୍ଣ୍ଣ ଘୂର୍ଣ୍ଣନରେ । ଅବସ୍ଥାଚକ୍ରର ଦ୍ୱିତୀୟ ଘୂର୍ଣ୍ଣନ ପାଇଁ ନିୟତିର ଧ୍ୟ ବ୍ୟବସ୍ଥା ନାହିଁ । "ନସପୁନରାବର୍ତ୍ତତେ" ଏହି ବେଦ ବାକ୍ୟ ନିଶ୍ଚୟ ମାନିବାକୁ ହେବ ।

ସକଳ ଜ୍ଞାନ-କର୍ମଦକ୍ଷ ଯୌବନ କ୍ରମେ କ୍ରମେ ଦେହରୁ ଅପସରି ଯାଇ ସେ ସ୍ଥାନକୁ ପ୍ରୌଢ଼ ଆସି ଆକ୍ରମି ବସେ । ଯୌବନରେ ଅଭ୍ୟସ୍ତ କର୍ମ ଗୁଡ଼ିକ ପ୍ରୌଢ଼ ସମୟରେ ଆଚରିତ ହେଉଥିଲେ ମଧ୍ୟ ସେହି କାର୍ଯ୍ୟ ସମ୍ପାଦନରେ ପୂର୍ବପରି ଆଉ କର୍ମପ୍ରେରଣା ଦେଖାଦିଏ ନାହିଁ । କର୍ମୀର ସେହି ତେଜୋମୟୀ ଶକ୍ତି କ୍ରମଶଃ କ୍ଷୀଣ ହୋଇ ଆସୁଥିବାରୁ ସକଳ ଦିଗରୁ ଉତ୍ସାହ ଅପସରି ଯାଏ । ଅବଯୁବାଦରେ ଅବସାଦ ଘଟି କାର୍ଯ୍ୟ ତତ୍ପରତାରେ ବାଧା ପହଁଚାଇ ଦିଏ ।

ସଂସାରର ବ୍ୟାପାର ଚଳାଇବା ପାଇଁ ଯେପରି ରାଜକୀୟ ନିର୍ଦ୍ଦିଷ୍ଟ ନିୟମଲଙ୍ଘନ କାରଣରୁ ବାରମ୍ବାର ବିଜ୍ଞାପନ ଦେଇ ରାଜସଂସ୍ଥାନରେ ଉପସ୍ଥିତ ହେବାପାଇଁ ଅନୁରୋଧ ପ୍ରଥମେ ପ୍ରଥମେ କରାଯାଏ, ତାହା ଯଦି ଦୋଷୀ ନମାନେ ତେବେ ରାଜପୁରୁଷମାନେ ବଳାତ୍କାରରେ ସେହି ନିୟମ ଲଙ୍ଘନକାରୀଙ୍କୁ ବାନ୍ଧିନେଇ ରାଜ ଦରବାରରେ ଉପସ୍ଥାପିତ କରାଇ ଦିଅନ୍ତି, ସେହିପରି ପ୍ରଥମେ ମାନବକୁ ବିଜ୍ଞାପନ ସ୍ୱରୂପ "ଚୁଳପିଆ" ବା ଦୃକ୍‌ଶକ୍ତି ହୀନତା ଜଣାଇଦିଏ ଯେ, ପରମାତ୍ମାଙ୍କ ନିଦେଶରେ ଏବେ ମାନବର ଗୃହଗୋଷ୍ଠି ଅବସ୍ଥା ଶେଷ ହେବାକୁ ବସିଲାଣି । ଅଉ ଯୋଡ଼ିଏ ଦୁର୍ବଳ ଅବସ୍ଥା ମାତ୍ର ଅବଶିଷ୍ଟ ରହିଛି ।

ତାପରେ ଦ୍ୱିତୀୟ ବିଜ୍ଞାପନରେ ଜଣାଇ ଦିଆଯାଏ ଯେ, ମାନବର ଦନ୍ତ ଶକ୍ତି ଊଣା ହୋଇ ସ୍ଥାନଚ୍ୟୁତ ଘଟେ ।

ତୃତୀୟ ବିଜ୍ଞାପନରେ ଯୌବନର ସୌନ୍ଦର୍ଯ୍ୟ ବର୍ଦ୍ଧିତ ଶିରୋରୁହ ଓ ଲୋମରାଜିର କାଳିମଛଟାକୁ ବିନଷ୍ଟ କରି ଶୌକ୍ଲ୍ୟମ କରି ଦିଆଯାଏ । ସେଥିରେ ମଧ୍ୟ ମାନବ ନିୟତି ଆଦେଶ ଉତ୍ତମରୂପେ ବୁଝିନପାରି, ଯଦି ତାହା ଅମାନ୍ୟ କରେ, ତେବେ ନିୟତିର କିଙ୍କରମାନେ ଉପହାସ କରି ତାହା ସବୁ ରାଜଦର୍ବାରରେ ଜଣାଇଁ ଦିଅନ୍ତି । ଧର୍ମରାଜ ଦର୍ବାରରେ ସକଳ ପ୍ରକାର ବିଜ୍ଞାପନର ଅବମାନନା କଥା ଲିଖିତ ଭାବରେ ଅଗୃର୍ଯ୍ୟ ବିଷୟ ବୋଲି ରଖାଯାଏ । ସମୟ ଦେଖି ତାର ଉପଯୁକ୍ତ ଶାସ୍ତି ବିଧାନ କରାଯିବ ।

ଉପଯୁକ୍ତ ଶିକ୍ଷାର ପ୍ରଭାବରୁ ମାନବ, ପୁତ୍ରଦାରାଙ୍କ ହସ୍ତରେ ଗୃହ ଭାର ନ୍ୟସ୍ତ କରିଦେଇ, ନିଜେ ବାନପ୍ରସ୍ଥ ବା ପରିବ୍ରାଜକ

ହୋଇ, ଭାରତର ବିଭିନ୍ନ ସ୍ଥାନମାନଙ୍କରେ କେତେ କେତେ ଧନ ଲେଖେ ରତ୍ନ, ଜନ ସମାଜର କଲ୍ୟାଣାର୍ଥ ଦାର୍ଶନିକ, ସାମାଜିକ, ପୌରାଣିକ, ବୈଦିକ ଏବଂ ଉପନିଷଦଭାବରଞ୍ଜିତ ନାନା ପ୍ରକାର ଭାଷଣମାନ ଦିଆଯାଏ । ଧର୍ମରେ ପ୍ରଧାନତଃ ଆସ୍ଥା ରଖି ଚଳିବା ପାଇଁ ପ୍ରତ୍ୟେକ ଭାଷଣରେ କୁହାଯାଏ । ଏହିପରି ଯୁଗ ଯୁଗାନ୍ତରରୁ ପରିବ୍ରାଜକମାନେ ଚଳାଇ ଆସୁଥିଲେ । ଏ କଳିଯୁଗରେ ଲୋକମାନଙ୍କର ମନ ପାପକଳୁଷିତ ହୋଇଯିବାରୁ "ସନାତନ" ବା "ହିନ୍ଦୁ" ଧର୍ମର ମୂଳ ବୈଦିକ ଗ୍ରନ୍ଥମାନଙ୍କର ଅଯଥା ଅର୍ଥକରି ଅଥବା ପୌରାଣିକ କଳ୍ପନାପ୍ରସୂତ ବିଭିନ୍ନ ମତଗୁଡ଼ାଏ ସୃଷ୍ଟିକରି, ଅନାଦି "ସନାତନ ଧର୍ମମତରେ ସହସ୍ର ପ୍ରକାର ବାଧାଅଣି ଉପସ୍ଥାପିତ କରୁଅଛନ୍ତି ।

ଲୋକ ସମାଜର ମନ ବିଭିନ୍ନ ଶିକ୍ଷା ଓ ପ୍ରବର୍ତ୍ତନା ଯୋଗେ କେତେବେଳେ କେଉଁଆଡ଼େ ବହିପଡ଼େ । ସୁତରାଂ ସମାଜନୀତି ବା ରାଜନୀତି, ଅଥବା ଧର୍ମନୀତି ସମ୍ବନ୍ଧୀୟ ବିଷୟରେ ପ୍ରତ୍ୟେକ ଶିକ୍ଷାସ୍ତରରେ ବିଧିବ୍ୟବସ୍ଥା ରଖାଯାଇ ଥିବାରୁ ତାହା ଶତ ବାଧା ବିଘ୍ନର ସମ୍ମୁଖୀନ ହୋଇସୁଦ୍ଧା ଅଦ୍ୟାବଧି ଚଳି ଆସୁଛି ।

କିନ୍ତୁ ବର୍ତ୍ତମାନ ଯୁଗର ପ୍ରଭାବରୁ "ଚାଉଁଳକୁନ୍ଦରୁ ଶେଣ୍ଢି ବାହାରି କଣ୍ଢେଇର ବାଇଗଣରେ ଲାଗି କୁମ୍ଭର ବଂଶନାଶ କଲାପରି" ସନାତନ ଧର୍ମାବଲମ୍ବିମାନେ ନିଜଧର୍ମର ବିଷୟରେ କିଛିହେଲେ ନ ପଢ଼ି, ନଜାଣି, ଗବେଷଣା ମଧ୍ୟ ନକରି, ସ୍ୱଧର୍ମର ନାନାବିଧ କୁତ୍ସାରଟନା କରି ବୁଲୁଛନ୍ତି । ଦେଖାଯାଉ ଯେ, ପୃଥିବୀରେ ଖ୍ରୀଷ୍ଟଧର୍ମ, ମାହମ୍ମଦଧର୍ମ, ବୌଦ୍ଧାଦି ଯେତେ ଯେତେ ଧର୍ମ ଅଛି, ସେସବୁ ସେହି ଧର୍ମାବଲମ୍ବିମାନେ କେବେହେଲେ ନିଜନିଜର

ଧର୍ମପ୍ରତି ଅନାସ୍ଥା ପ୍ରକାଶ କରୁନଥନ୍ତି କି ? ଏତଦ୍ ନବୁଝିବାରୁ ସନାତନ ଧର୍ମ ଆଜି ବିପନ୍ନ ହୋଇଅଛି ।

ସନାତନ ଧର୍ମସମ୍ବନ୍ଧୀୟ ଗ୍ରନ୍ଥଗୁଡ଼ିକରେ ସମାଜର ଶାନ୍ତି ଶୃଙ୍ଖଳା ରକ୍ଷା ଦିଗରେ ଦୃଷ୍ଟିଦେଇ ଯେଉଁସବୁ ଉପଦେଶ ବାକ୍ୟମାନ ଅନନ୍ତକାଳରୁ ଲିଖିତ ହୋଇ ରହିଅଛି, ତାହା ଯୁଗେଯୁଗେ ପୃଥିବୀର ଅମୂଲ୍ୟ ସମ୍ପଦ । କିନ୍ତୁ ଜନସମାଜ ନିଜର ବିଜ୍ଞାନୌଦ୍ଧତ୍ୟ ପ୍ରକାଶକରି ସେହି ସବୁ ନୀତିକି ଅପମାନ ବା ଅନାଦର ଭାବରେ ସୁଦୂର ବର୍ଜନକରିଦେଇ ପରମ ସନ୍ତୋଷ ଲାଭ କରୁଛି !

ଅତଏବ ଗୋଟିଏ କଥାମଧ୍ୟ ନକହିଲେ ନଚଳେ । ଭାରତୀୟ ହିନ୍ଦୁଧର୍ମାବଲମ୍ବି ମାନଙ୍କର ଆଧୁନିକ ଶିକ୍ଷାର ପ୍ରଭାବରେ ଆଶ୍ରମ ଚତୁଷ୍ଟୟ ବ୍ୟବସ୍ଥାରେ ଅବିଶ୍ୱାସ ଜନ୍ମିଯିବାରୁ ଆଶ୍ରମୀ ହୋଇ ରହିବାକୁ କେହି ଇଚ୍ଛା କରୁନାହାନ୍ତି । ଫଳରେ ଅନ୍ୟାନ୍ୟ ଧର୍ମ ଯାଜକମାନେ ଦେଶ ଦେଶେ ବୁଲି ସ୍ୱ ସ୍ୱ ଧର୍ମ ପ୍ରଚାର କଲାପରି ଏ ଅନାଦି ପ୍ରସିଦ୍ଧ ହିନ୍ଦୁଧର୍ମର ପ୍ରଚାରକ ସ୍ୱରୂପ ପରିବ୍ରାଜକ ଦେଖାଯାଉନାହାନ୍ତି । ଏ ଯୁଗରେ କେବଳ ପ୍ରଚାରକର ଅଭାବମଧ୍ୟ ଗୋଟିଏ ଧର୍ମଗ୍ଲାନିର କାରଣବୋଲି ବିବେଚିତ । ପ୍ରସିଦ୍ଧ ସନାତନ ଧର୍ମର ବିଶ୍ୱବ୍ୟାପକତା କିପରି ପରିସ୍ଫୁଟ ହୋଇ ରହିଛି, ନିମ୍ନଗତ ଶ୍ରୀମଦ୍ଭଗବଦ୍‌ଗୀତାର ଗୋଟିଏ ଶ୍ଳୋକରୁ ଅନୁମିତ ହୁଏ ।

"ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଁ ସ୍ତଥୈବ ଭଜାମ୍ୟହଂ ।
ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ ॥ "

ଏଥିରୁ ଜଣାଯାଏ ଯେ, ଶୈବ, ଶାକ୍ତ, ଗାଣପତ୍ୟ, ବୈଷ୍ଣବ, ଜୈନ, ବୌଦ୍ଧ, ଖ୍ରୀଷ୍ଟ, ମାହମ୍ମଦ ପ୍ରଭୃତି ଯେତେ ଯେତେ ଧର୍ମ

ଏ ଭୂମଣ୍ଡଳରେ ପ୍ରତିଷ୍ଠିତ ହୋଇଅଛି, ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣ ସ୍ୱମୁଖରେ ବ୍ୟକ୍ତକରିଛନ୍ତି ଯେ, ମୁଁ ସେହି ୨ ରୂପରେ ସେହି ୨ ଧର୍ମାବଲମ୍ବିମାନଙ୍କୁ ଏ ପାପ କ୍ଲିଷ୍ଟ ସଂସାରରୁ ଉଦ୍ଧାର କରିଥାଏ । ସନାତନ ଧର୍ମର ବିଶ୍ୱବ୍ୟାପକତା ବିଚାର, ମନୀଷୀମାନେ ଥରେହେଲେ ଅନ୍ତର୍ଦୃଷ୍ଟି ଯୋଗେ ଭାବିଚିନ୍ତି ଦେଖନ୍ତୁ ।

ବିଶ୍ୱବ୍ୟାପକ ସନାତନ ଧର୍ମର ଅନାଦର ଯୋଗେ ଆଜି ନିଖିଳ ଧରଣୀ ମଣ୍ଡଳରେ ପ୍ରତିକ୍ଷଣେ ଯୁଦ୍ଧବିଗ୍ରହର ସମ୍ଭାବନା ଉପୁଜୁଛି । ଶାନ୍ତି ଆଜି ଜନମାନସରେ ରହିନପାରି ସୁଦୂର ପରାହତ ହୋଇ କେଉଁ ଅଜଣା ଦେଶକୁ ଚାଲି ଯାଇଛି । କେବଳ ଲୋକ ମୁଖରେ "ଶାନ୍ତି"ର ନାମମାତ୍ର ସଭାସମିତିରେ ଉଚ୍ଚାରିତ ହେଉଛି । ଯେ ବା ଶାନ୍ତିବାଚକ, ସେ ନିଜେ ଶାନ୍ତିର ଅନୁପଯୋଗୀ ହୋଇନଥିବାରୁ ଶାନ୍ତି ବାଚନର ଫଳ ବା ମୂଲ୍ୟ କିଛିହେଲେ ରହୁନାହିଁ । ନିଜେ ଲୋକ ସତ୍ପଥଗାମୀ, ଶାନ୍ତିପ୍ରିୟ, ସତ୍ୟପରାୟଣ, ଧର୍ମପର, ଅନ୍ତରପୂତ, ସଦାଚରଣ ପଟୁ, ଲୋକପ୍ରିୟ, ସଂଯମୀ, ଜ୍ଞାନବୃଦ୍ଧ, ବାକ୍ପଟୁ, ଅନୁଦ୍ଧତସ୍ୱଭାବ, ନିରହଙ୍କାର, ପରଗୁଣଗ୍ରାହୀ, ହିଂସାରହିତ, କଷ୍ଟସହିଷ୍ଣୁ, ସମସୁଖଦୁଃଖ, ପରଦୁଃଖ କାତର, ପରଧନାନଭିଳାଷୀ, ଏବଂ ନିରାଡମ୍ବର ହୋଇ ଲୋକ ସଭାରେ ଧର୍ମସମ୍ବନ୍ଧୀୟ ଭାଷଣଦିଏ, ତାଙ୍କର କଥାରେ ଲୋକ ସାଧାରଣଙ୍କର ପରମ ବିଶ୍ୱାସ ଜନ୍ମି ଧର୍ମଭାବକୁ ବଢ଼ାଇ ଲୋକଙ୍କୁ ଅନ୍ତର ପୂତ କରିଦିଏ । ଅନ୍ତରପୂତ ଧର୍ମପରଲୋକଙ୍କର ପରସ୍ପର ସହାନୁଭୂତି ଯୋଗେ ଲୋକସମାଜରୁ ଦୈନ୍ୟ, ହୀନତା, ଦ୍ୱୈଷ୍ୟ, ଅକର୍ତ୍ତୃକତା, ଭୋଗକାଙ୍କ୍ଷା, ଅସହାୟତା, ଦାରିଦ୍ର୍ୟ, ଧର୍ମବିଦ୍ୱେଷିତା, ନୈଷ୍ଠୁର୍ଯ୍ୟ, ପ୍ରବଞ୍ଚନା, ଶଠତା, ପ୍ରଭୃତି ସମାଜନୀତି ଧ୍ୱଂସକାରୀ ଦୋଷଗୁଡ଼ିକ ସମାଜରେ ସ୍ଥାନ ଟିକିଏ ନପାଇ ଅଜଣା ଦେଶକୁ ଚାଲିଯାଇଥାନ୍ତି । ସୁତରାଂ ସମାଜରେ

ସର୍ବୋନ୍ନତ ଘଟି ଲୋକେ ପରମ ସୁଖରେ କାଳ ଅତିବାହିତକରି ଶାନ୍ତି ଅନୁଭବ କରନ୍ତି । ସେହି ପ୍ରୌଢ଼ାବସ୍ଥାରେ ଲୋକେ ତୃତୀୟାଶ୍ରମ "ବାନପ୍ରସ୍ଥ"ରେ ବୁଲି ୨ ଏହିପରି ପ୍ରଚୁର କାର୍ଯ୍ୟରେ ନିଜର ପ୍ରାଣ ଉତ୍ସୃଷ୍ଟ କରିଥାନ୍ତି ବୋଲି ଦେଶରେ ବା ସମାଜରେ ଅନାୟାସେ ଶାନ୍ତି ବିରାଜୁଥିଲା ।

ଆଜିକାଲିର ଯେଉଁମାନେ ବକ୍ତା ବା ନେତା ସେମାନଙ୍କର ପ୍ରଥମେ "ବେଶ" ବସ୍ତ୍ରାଡମ୍ବର, ଲୋକଙ୍କର ମନରେ ଶାନ୍ତି ବଦଳରେ ଚମକ ଆଣି ଦେଉଛି, ପୁଣି ସେମାନଙ୍କର ପରବଶତା, ସୁରାପାନରେ ରହିଛି, ଧର୍ମପରତା, କୋଟ, ପେଣ୍ଟ, ନେକ୍‌ଟାଇ, ରେ, ଏବଂ ସଭ୍ୟତା ଅଧମାଙ୍ଗ ବଜ୍ଜିତ ହସ୍ତଦ୍ୱୟରେ, ବାକ୍‌ପଟୁତା ଇତର ଦେଶୀୟ ଶିକ୍ଷିତ ବ୍ୟକ୍ତିଙ୍କ ନାମୋଲ୍ଲିଖନରେ, ଏହାସବୁ ଏ ଯୁଗମନ୍ତ୍ରୀମାରେ ଏପରି ହୋଇ ଯାଉଛି । ସୁତରାଂ "କାହାକୁ କହିବା କପାଳରେପିନା କରତାଡ଼ିବା" ଏହି କବି ଉକ୍ତିଟି ମନେ ପକାଇ ଏଣିକି ବସିବାଛଡ଼ା ଅନ୍ୟ ଉପାୟ ଦିଶୁନାହିଁ ।

ଏତିକି ଭରସା ଅଛି ଯେ, ଶିକ୍ଷାଳୟରେ ଅବା ପରିବ୍ରାଜକ ନିଯୁକ୍ତିଦ୍ୱାରା ଯଦି ଭାରତରେ ଧର୍ମସଂସ୍କାର ବ୍ୟବସ୍ଥା କରାଯାଏ, ତେବେ ଭାରତ କାହିଁକି ସମୁଦାୟ ଭୂମଣ୍ଡଳରେ ଶାନ୍ତି ବିରାଜିତ ହୋଇ ଉଠିବ । ଅଭ ଏ କୁଟନୀତି ରହିପାରିବ ନାହିଁ । ତାହାସଙ୍ଗେ ସ୍ୱାର୍ଥପରତା ଅନୁଧାବନ କରିବ । ସଗର୍ବିସାଦମାନେ ସ୍ଥଳବିଶେଷ ଆଶ୍ରୟ ଗ୍ରହଣକରି, ଲୁଚିଯିବେ । ଚୌର୍ଯ୍ୟାଦି ଦୁଷ୍କର୍ମର ନାମମାତ୍ର ରହିବ, କିନ୍ତୁ ଆଚରଣରେ ଦେଖାଯିବ ନାହିଁ । ରାଜନୀତିର ପ୍ରଭାବରେ ଉକ୍ତ କର୍ମଗୁଡ଼ିକର ପ୍ରତିରୋଧ ଭୟ ପ୍ରଦର୍ଶନରେ କରାଯାଏ । କିନ୍ତୁ ଧର୍ମନୀତିର ଅମୃପ୍ରଭାବରେ ସକଳ ଦୁଷ୍କର୍ମ

ଆପଣା ଛଏଁ ବନ୍ଦହୁଏ । ସୁତରାଂ ଏଥିରେ ଗୌଣ, ମୁଖ୍ୟ ଭାବ ଦେଖାଇ ଦିଏ ଯେ, ଉଭୟର ଅଙ୍ଗାଙ୍ଗୀ ଭାଗରେ ସାମଞ୍ଜସ୍ୟ ନିୟନ୍ତ୍ରଣ ରକ୍ଷିତ । ଗୋଟିକୁ ଛାଡ଼ିଲେ, ଅପରଟି ରହିପାରେନାହିଁ । ଯୋଡ଼ିକଯାକ ନୀତିର ପରସ୍ପରରେ ନିତ୍ୟ ସମ୍ବନ୍ଧ ରହିଛି ଓ ରହିବ । ପ୍ରତ୍ୟେକ ସ୍ତରରେ ପ୍ରଧାନ ଅପ୍ରଧାନ ଭାବରହିଛି ।

ଚକ୍ରବର୍ତ୍ତୀଙ୍କର ସମୁଦାୟ ଆସମୁଦ୍ରାନ୍ତ ଦେଶଟିରେ ପ୍ରଧାନାଧିକାର ରହେ । ପ୍ରଦେଶ ଗୁଡ଼ିକରେ ରାଜନୀତି ପରିଚାଳକ ମାନଙ୍କର କେବଳ ସେହି ୨ ପ୍ରଦେଶର ଲୋକମଙ୍ଗଳ ଦୃଷ୍ଟିରୁ ଯାହାକିଛି ଗୌଣ ଅଧିକାର ଥାଏ । ତାହାମଧ୍ୟ ଚକ୍ରବର୍ତ୍ତୀଙ୍କ ମୁଖ୍ୟ ରାଜନୀତିର ଅନିରୁଦ୍ଧ ହୋଇଥିବ, ଅନ୍ୟଥା ଅଚରିତ ହେଲେ ମୁଖ୍ୟ ରାଜନୀତି ତାହା ଗ୍ରହଣକରି କାର୍ଯ୍ୟ ପରିଚାଳନା କରାଇନେବ । ଏ ଯୁଗରେ ଗୌଣ ରାଜନୀତି ମଧ୍ୟ ନିଜର କୌଶଳ ଦେଖାଇ, ମୁଖ୍ୟ ରାଜନୀତି ଲଙ୍ଘନ କରିବାକୁ ଦୁଃସାହସ ଦେଖାଉଛି । ଏ ଯୁଗର ପ୍ରତିଭା ଶକ୍ତିକି ଶତଧନ୍ୟବାଦ ଦେଇ ଆସେ ।

ଏଥିସମ୍ପର୍କରେ ଏତିକି କୁହାଯାଇ ପାରେ:- ପ୍ରାଦେଶିକ ରାଜନୀତି ପ୍ରାକୃତିକ ବା ଅପ୍ରାକୃତିକ ବିପଦରୁ ଜନସାଧାରଣଙ୍କୁ ଉଦ୍ଧାର କରିବାରେ ଯଦି ଅପାରଗହୁଏ, ତେବେ ସାର୍ବଭୌମ ନୀତି ଆଗରେ ତାହା ବାଢ଼ିଲେ, ସେ ତାହାର ନିରାକରଣ କରିବାକୁ ଯତ୍ପରୋନାସ୍ତି ଚେଷ୍ଟା କରି ଅବଶ୍ୟ ପୂରଣ କରିବ । ଏହା ଜାଣିଶୁଣି ପ୍ରଦେଶ ଗୁଡ଼ିକରେ ଯାହା ଅଶାନ୍ତି ସମୟେ ୨ ଦେଖାଯାଉଛି, ତାହା କେବଳ ସ୍ୱାର୍ଥଚିନ୍ତାର ଅପଚେଷ୍ଟା ବୋଲି ପ୍ରତୀୟମାନ ହୁଏ । ଏଥିପ୍ରତି ମୁଖ୍ୟ ରାଜନୀତିର ତୀବ୍ରତର ଦୃଷ୍ଟି ରହିଲେ ଯାଇ ତାହା ସୁଧୁରି ପ୍ରକୃତ ପନ୍ଥାକୁ ଆସିବ । ନଚେତ୍ ସାମୟିକ ଅଶାନ୍ତି ଆସି ସ୍ଥଳ ବିଶେଷରେ ନିଜର ପୈଶାଚିକରୂପ ଦେଖାଇ ଅଟ୍ଟହାସ ପ୍ରକାଶକରିବ ।

ଏହାପରେ ରାଜନୈତିକ ଓ ଧର୍ମନୈତିକ ବିଶୃଙ୍ଖଳା ଦୂର କରିବା ପାଇଁ ବହୁଯୁଗରୁ ପରିବ୍ରାଜକ ବା ବାନପ୍ରସ୍ଥାଶ୍ରମର ବ୍ୟବସ୍ଥା କରାଯାଇଥିଲା । ପରିବ୍ରାଜକମାନେ ଦେଶର ପ୍ରତିପଲ୍ଲିରେ ବୁଲି ବୁଲି ଉଭୟ ନୀତି ସମ୍ବନ୍ଧୀୟ ଉପଦେଶମାନ ଦେଇ ଦେଶରୁ, ନଗରରୁ ବା ଗ୍ରାମରୁ ସକଳ ଦୁର୍ନୀତି ନିବାରଣ କରି ଦେଉଥିଲେ । ପ୍ରଧାନ ରାଜନୀତି ସେଥିପ୍ରତି ଦୃଷ୍ଟି ଦେଇ ବନ୍ଦୀମାନଙ୍କର ଅବସ୍ଥିତି ପାଇଁ ପ୍ରତ୍ୟେକ ନଗର ଏବଂ ଗ୍ରାମମାନଙ୍କରେ ଦେବାଗାର ବା ମଠାଦିର ବ୍ୟବସ୍ଥା କରି ଦେଇଥିଲେ । ମଠ ମନ୍ଦିରାଦିର ପ୍ରଧାନ ଉଦ୍ଦେଶ୍ୟ "ମଠଛାତ୍ରାଦି-ନିଲୟଃ" ଏହିଥିରୁ ଅନୁମିତହୁଏ ଯେ,—ମଠଗୃହକରେ ପବିତ୍ର ଭାବରେ ସକଳଶାସ୍ତ୍ର ଅଧ୍ୟୟନ କରନ୍ତି ଛାତ୍ରମାନେ । ପୁଣି ଆଦି ପଦର ଅର୍ଥରେ ପରିବ୍ରାଜକ ପ୍ରଭୃତି ଆଗନ୍ତୁକ ପଣ୍ଡିତ, ସନ୍ନ୍ୟାସୀ, ଧାର୍ମିକ, ପୀଡ଼ିତ, ବୁଭୁକ୍ଷିତ, ଅରକ୍ଷିତ, ଏମାନଙ୍କର ପ୍ରାଥମିକ ଆତିଥ୍ୟ କରିବା । ପ୍ରଧାନାପ୍ରଧାନ ରାଜନୀତିର ତତ୍ତ୍ୱରେ ସୁପରିଚାଳନା ଦୃଷ୍ଟି ଛଡ଼ା ଅନ୍ୟ ହସ୍ତକ୍ଷେପ ନୀତି ଯୁଗୋଚିତ ବୋଲି କହିବାକୁ ହେବ । କାରଣ ସ୍ୱରୂପ ଦେଖା ଯାଉଛି ଯେ,—ସର୍ବଜନୋପକାରୀ "ମଠମନ୍ଦିର", ତାର ପରିଚାଳକ ଗୃହୀତ ହୋଇ ନପାରେ, କେହି ଜଣେ ଗୃହତ୍ୟାଗୀ ବା ସନ୍ନ୍ୟାସୀ, ସେ ମଧ୍ୟ ଶାନ୍ତ, ଶିଷ୍ଟ ନିର୍ଲୋଭ ଚରିତ୍ର ସମ୍ପନ୍ନ, ଜ୍ଞାନୀ ହୋଇଥିଲେ, ଲୋକସାଧାରଣ ତାହାଙ୍କୁ ସର୍ବସମ୍ମତିକ୍ରମେ ମଠ ବା ମନ୍ଦିରର ପରିଚାଳକ ବା ଅଧ୍ୟକ୍ଷ ପଦରେ ପ୍ରତିଷ୍ଠିତ କରନ୍ତି । ପ୍ରୋକ୍ତ ମଠମନ୍ଦିରାଧୀଶ, ତଦୀୟ ଚିରସ୍ଥିତି ଏବଂ ଉଦ୍ଦେଶ୍ୟ ସାଧନ ପ୍ରତି ଦୃଷ୍ଟିରଖି, ସୁପରିଚାଳନା କରିଥାନ୍ତି । ଏହାପରେ ଉପଯୁକ୍ତ ତ୍ୟାଗବ୍ରତ ଲୋକ ବାଛି ଅଧ୍ୟକ୍ଷ ନିର୍ବାଚନ ଅଧିକାର ସାଧାରଣ ଲୋକଙ୍କ ହାତରେ ଥାଏ । ମଠ ମନ୍ଦିରାଦି ସମ୍ପତ୍ତି ସବୁଯୁଗରେ ଧାର୍ମିକମାନଙ୍କ ପ୍ରଦାନ ଯୋଗେ ହୋଇଥାଏ । ଆଧୁନିକ ଯୁଗରେ ଲୋକମାନଙ୍କ ଦ୍ୱାରା ନିର୍ବାଚନ ସେହି ମଠମନ୍ଦିରାଧୀଶମାନେ ନିର୍ବାଚନ କ୍ରିୟା ବନ୍ଦ ହେବାରୁ ଗୁରୁ

ପରମ୍ପରାରେ ଅଧିକୃତ ମଠ ସମ୍ପତ୍ତିକୁ ବ୍ୟକ୍ତିଗତ ସମ୍ପତ୍ତିରେ ପରିଣତ କରିବା ଇଚ୍ଛା ଦେଖାଇବାରୁ ତନ୍ମଧ୍ୟରେ ରାଜନୀତି ହସ୍ତକ୍ଷେପ କରୁଛି । ତାହା ନ କଲେ, ସାଧାରଣ ଧର୍ମସମ୍ପତ୍ତି ବ୍ୟକ୍ତିଗତ ହୋଇ ଯିବାର ବିଶେଷ ଆଶଙ୍କା ଜନ୍ମି ଯାଉଛି । ସେ ଦିନ ଆସୁଛି, ଯେଉଁଦିନ ଏ ମଠମନ୍ଦିର ସଂପୃକ୍ତ ସମ୍ପତ୍ତି ରାଜନୀତିରୁ ଅଲଗା ରହି, କେବଳ ଧର୍ମ ସଂକ୍ରାନ୍ତ କାର୍ଯ୍ୟରେ ବିନିଯୁକ୍ତ ହେବ । ସେଥିରେ କିଏ ବା କାହିଁକି ବାଧାଦେବ ? ଧର୍ମ କେବେହେଲେ କାହାରି ଅନାକାଂକ୍ଷିତ ନୁହେଁ । ଅପପ୍ରଚାର ବା ଶିକ୍ଷାନୀତି ଯୋଗେ ଧର୍ମପରାୟଣ ଲୋକ ସାଧାରଣଙ୍କର ସମୟାନୁକ୍ରମେ ଭାବଧାରାର ଅପେକ୍ଷାକୃତ ଟିକିଏ ହ୍ରାସ ବୃଦ୍ଧି ମାନ ଦେଖାଯାଇ ଥାଏ । ମାନବ ସମାଜ ରକ୍ଷକ ଧର୍ମ କେବେ ହେଲେ ବିନଷ୍ଟ ହେବା ପଦାର୍ଥ ନୁହେ । ଧର୍ମନଷ୍ଟ ହେଲେ ମନୁଷ୍ୟ ସଭ୍ୟତା ହରାଇ, କେବଳ ପଶୁରେ ଗଣ୍ୟହେବ । ଅତଏବ ସତ୍ୟ ଯୁଗରେ ଧର୍ମ ପୂର୍ଣ୍ଣମାତ୍ରାରେ ଥିଲା, ପ୍ରଚଳିତ ଯୁଗରେ କେତେକ ନୀତିର ବ୍ୟତିକ୍ରମ ମାନ ଦେଖା ଯାଉଛି । । ସେହି ବ୍ୟତିକ୍ରମ ଟିକକ ମଧ୍ୟ ଅଳ୍ପ ସମୟରେ ବଦଳିଯାଇ, ପୁଣି ଧର୍ମର ସତ୍ପଥରେ ଲୋକ ସମାଜର ମନ ଅନୁଧାବନ କରିବାର ଆଶା ଜନ୍ମିଲଣି ।

ସାଧାରଣତଃ ଦେଖିବାକୁ ଗଲେ—ସମାଜରେ ପୁରୁଷ ଅପେକ୍ଷା ସ୍ତ୍ରୀଜାତି ଧର୍ମ ସଂସ୍ଥା ରକ୍ଷା ବିଧାନରେ ବିଶେଷ ଦାୟିତ୍ୱ ଗ୍ରହଣ କରି ଥାଏ । ପ୍ରତିଯୁଗରେ ଏବଂ ପ୍ରତି ପୁରାଣରେ ଧର୍ମରଗୁରୁତା ଦେଖାଇ ଦିଆଯାଇଛି, ସେହିଭଳି ସ୍ତ୍ରୀଜାତିରେ । ପୁରୁଷର ଧର୍ମାଚରଣରେ ଟିକିଏ ଅତ୍ୟାଗ୍ରହ ଅନେକ ସମୟରେ ଦେଖାଦିଏ । ଧର୍ମ ଅତ୍ୟାଗ୍ରହକୁ ସ୍ତ୍ରୀଜାତି କେବେହେଲେ ଅନୁମୋଦନ କରେନାହିଁ । ଅତଏବ ବାନପ୍ରସ୍ଥାଶ୍ରମ କରିବାଲୋକ, ପୁଅ ଏବଂ ପୁତ୍ରବଧୂ ନିକଟରେ ନିଜର ଗୃହିଣୀ କୁ ରଖିଦେଇ, ନିଜେ ବନୀହୁଏ । କାଳେ ଯୌବନ ମଦରେ

ପୁଅ ଉପସ୍ଥିତ ହୋଇ ଗୃହୀର ଶବଚରିତ ଧର୍ମପନ୍ଥାରେ ଉତ୍ତରାଧିକାରବଶତଃ ଅବହେଳା କରି ଚଳିବ ନାହିଁ, ବୃଦ୍ଧା ଜନନୀ ଥିଲେ, ତାପର ହେଲେ ପୁତ୍ରକୁ ବୁଝାଇ ଦେଇ ସନ୍ତୁଷ୍ଟି ରକ୍ଷା କରିବ । ଏହିପରି ବହୁ ଯୁଗରୁ ଚାଲି ଆସୁଥିବାରୁ ଅଳ୍ପ ଧର୍ମ ପଥ କଣ୍ଟକାକୀର୍ଣ୍ଣ ବୋଲି, ଲୋକେ ମନେ କରୁଥିଲେ ସୁଦ୍ଧା ତାହା ଲିଭି ନ ଯାଇ ରହୁଛି ! ଆହୁରି ଯେତେ ଦିନଯାଏଁ ଋଗ୍‌ବେଦଠାରୁ ବେଦର ନାମ ଲୋକମୁଖରେ କୀର୍ତ୍ତିତ ହେଉଥିବ, ପ୍ରତ୍ୟେକମାନବ ଯେତେଦିନ ଯାଏଁ ନିଜ ନିଜର ଜାତି ନାମ ଘୋଷଣା କରୁଥିବେ, ସେତେଦିନ ପର୍ଯ୍ୟନ୍ତ ଏ ଧରାଧାମରେ ଧର୍ମର ଜୟ ଘୋଷ ବରାବର ଉଠୁଥିବ । ଏହି ନିୟତି ନିର୍ଦ୍ଦେଶକୁ କେହି ହେଲେ ଲଙ୍ଘି ପାରିବେ ନାହିଁ ।

କେତେକ ଖ୍ରୀଷ୍ଟିୟାନ ଧର୍ମଯାଜକ ପ୍ରଥମେ ଆସି ବଙ୍ଗଦେଶରେ ସ୍ୱଧର୍ମ ବିଷୟରେ ଭାଷଣ ଓ ପ୍ରବର୍ତ୍ତନା ଦେଇ, କେତେକ ଅଶିକ୍ଷିତ ଏବଂ ପଥବଣା ଲୋକଙ୍କୁ ସ୍ୱଧର୍ମରେ ଦୀକ୍ଷିତ କରାଇଥିଲେ । ସେଥିଲାଗି ଗୋଟିଏ ଖ୍ରୀଷ୍ଟିୟାନ ସମାଜ ଗଠିତ ହୋଇଥିଲା । ସେହି ସାମାଜିକ ନିମ୍ନସ୍ତରର ତଦ୍ଧର୍ମାବଲମ୍ବୀମାନେ ପରିଚାଳିତ ହେଉଥିଲେ ।

ସମୟ କ୍ରମେ ହିନ୍ଦୁଧର୍ମର ନିୟମ ଅନୁସାରେ ଗଙ୍ଗାନଦୀରେ 'ମହାମହା ବାରୁଣୀ ଯୋଗ" ଆସି ଉପଗତ ହେଲା । ଉକ୍ତ ବାରୁଣୀ ଯୋଗର ଚାରିଦିନ ପୂର୍ବରୁ ଖ୍ରୀଷ୍ଟଧର୍ମଯାଜକମାନେ ନୂତନ ଖ୍ରୀଷ୍ଟଧର୍ମରେ ସଂଯୁକ୍ତ ହିନ୍ଦୁମାନଙ୍କଠାରେ ଅବିଶ୍ୱାସ ରଖି ଗୋଟିଏ ସଭାରେ ନିଷ୍ପତ୍ତି କଲେ ଯେ,—"ଯେଉଁ ଦିନ ହିନ୍ଦୁମତରେ ଗଙ୍ଗା ମହା ମହା ବାରୁଣୀ ଯୋଗ" ହେବ, ସେ ଦିନଟିଯାକ ଆମର ଗୋଟିଏ ବଡ଼ଧରଣର ସଭାକାର୍ଯ୍ୟରେ କଟାଇ ଦେବାକୁ ହେବ" ଫଳରେ ହିନ୍ଦୁଖ୍ରୀଷ୍ଟିୟାନଙ୍କର ସେଥିରେ ବିଶ୍ୱାସ ଥିଲେ ମଧ୍ୟ ଆଉ ଅନ୍ୟତ୍ର ହୋଇ ଗଙ୍ଗା ସ୍ନାନାର୍ଥ ଲଭି ଯାଇପାରିବେ ନାହିଁ । ତେବେଯାଇ ଆମର ସଫଳ ଶ୍ରମ ଓ

ଯତ୍ନ ସାର୍ଥକ ହେଲା ବୋଲି ମନେ କରିବାକୁ ହେବ । ସେହିପରି ବାରୁଣୀ ଦିନ ସ୍ନାନାର୍ଥୀ ଯଥାବିଧିରେ ଚାଲିଲେ । ଏଥିରେ ହିନ୍ଦୁଧର୍ମ ନିୟମରେ ଗଙ୍ଗା ସ୍ନାନ ଯୋଗ ହବା ଏକାଦଶ ଘଟିକା ସମୟରେ ନିରୂପିତ ହୋଇ ଅଛି, ଅସଂଖ୍ୟ ହିନ୍ଦୁ ନରନାରୀ, ଘାଟାଘାଟରେ ଚାଲିବାରେ ବାଟ ଘାଟ ଲୋକାରଣ୍ୟରେ ପରିଣତ ହୋଇ ଗଲାଣି, ପଥ ଗଳିଗୁଡ଼ାକରେ ଜନ ପ୍ରବାହ ଚଳାଣି ଚାଲିଛି । କେବଳ ସେହି ଶୁଭମୁହୂର୍ତ୍ତ ଅପେକ୍ଷାରେ ଗଙ୍ଗାତୀର ଥାଟ ବାନ୍ଧୁଛି । ଗଙ୍ଗାଙ୍କ ଜୟ-ଘୋଷରେ ଗଗନ ମେଦିନୀ କମ୍ପି ଉଠୁଛି । ପ୍ରବର୍ତ୍ତିନୀ ଯୋଗେ ବା ଭ୍ରମବଶତଃ ଧର୍ମାନ୍ତର ଗ୍ରହଣ କରିଥିବା ହିନ୍ଦୁମାନେ ସହରର ଶତ କଟକଣା ସତ୍ତ୍ୱେ, ବାରୁଣୀର ଅଲକ୍ଷଣ ପୂର୍ବରୁ ନାନା ବ୍ୟାକୋକ୍ତି କରି ଯେ, ସେଥିଁ ମତେ ପାରିଲା, ସତ୍ୟ ଗୁଡ଼ ଆସି ଠିକ ନିର୍ଦ୍ଦିଷ୍ଟ ଯୋଗ ସମୟରେ ସକଳ ହିନ୍ଦୁ ଧର୍ମାନ୍ତର କଟକଣା ନମାନି ଆସି ସ୍ନାନ କାର୍ଯ୍ୟ ନିର୍ବାହ କରିଦେଲେ । ସେମାନେ ଭାବିନେଲେ ଯେ, ଉଚ୍ଚପଦ ପ୍ରାପ୍ତି ଆଶାରେ ଧର୍ମାନ୍ତର ଗ୍ରହଣ କରିଥିଲେ ବୋଲି, ଏ ମହାମହା ବାରୁଣୀ ଯୋଗ ବହୁକାଳ ପରେ ଥରେ ଘଟେ, ଏହା କାହିଁକି ଛାଡ଼ିବା । ଯାହା ହେବାର ହେଉ ପଛକେ ଆଗ ସ୍ନାନଟାଏ କରିନେଇ ଥିବା ।" ଏହା ଭାବି ଯେତେକ ହିନ୍ଦୁ ସେ ସହରରେ ଥିଲେ, ସମସ୍ତେ ଆସି ସ୍ନାନକରି ଗଲେ ଗଙ୍ଗାରେ । ଏଣେ ଧର୍ମ ଯାଜକ ହିନ୍ଦୁଙ୍କଠାରେ ତ ଆଗରୁ ସନ୍ଦେହ କରି ସହରର ଅୟୋଜନ କରିଥିଲେ, ପ୍ରକୃତରେ ସହରରେ ଯୋଗ ସମୟେ ହିନ୍ଦୁଙ୍କର ଦେଖା ନ ପାଇ, ଗଙ୍ଗାତୀରକୁ କେତେକ ଗୁପ୍ତଚର ପଠାଇଲେ । ସେମାନେ ଯଥା ସମୟରେ ଗଙ୍ଗାତୀରେ ଉପସ୍ଥିତ ରହି ଖ୍ରୀଷ୍ଟଧର୍ମାବଲମ୍ବୀ ହିନ୍ଦୁଙ୍କଠାରେ ଲକ୍ଷ୍ୟରଖି, ସେ ଯାହାମନେ ଛଟିବାସିଲେ । ଏ ଗୁପ୍ତଚରଙ୍କୁ କିଏ ମାନୁଛି ସେତେବେଳେ ? ନିର୍ଦ୍ଦିଷ୍ଟ ସମୟ ଆସିଗଲାମାନେ ସକଳ ହିନ୍ଦୁଧର୍ମାବଲମ୍ବମାନେ ସଦାରପୂର୍ବ ହୋଇ ଗଙ୍ଗାଜଳରେ ପରିସ୍ରବ

ଋଷି ବୃଡପଣ୍ଡ ଉଠିଲେ । ପରେ ଆଚମନାଦି ସନ୍ଧ୍ୟା ତର୍ପଣକରି, ଗଙ୍ଗା ସ୍ତୋତ୍ରପାଠାନ୍ତେ ଦେବାର୍ଚ୍ଚନୋଦ୍ଦେଶ୍ୟରେ ସଜଳ ହସ୍ତ ହୋଇ, ଯେ ଯାହାର ଗୃହାଭିମୁଖେ ଲସର ପସର ହୋଇ ବାହାରି ପଡ଼ିଲେ । ହିନ୍ଦୁମାନଙ୍କର ଏପରି ପବିତ୍ରତମ ଆଚରଣ ସବୁ ସ୍ୱଚକ୍ଷୁରେ ଖ୍ରୀଷ୍ଟିୟାନ ଗୁପ୍ତଚରମାନେ ବସି ଦେଖୁଥାନ୍ତି । ସଭାରୁ ପ୍ରତ୍ୟାବୃତ୍ତ ଧର୍ମାନ୍ତରିତ ହିନ୍ଦୁମାନେ ଉକ୍ତ ଯୋଗରେ ଗଙ୍ଗାସ୍ନାନାଦି କର୍ମକରି ଯିବା ମଧ୍ୟ ଦେଖିପାଇ ଧର୍ମଯାଜକମାନଙ୍କୁ ସବୁ ଗୋଟି ଗୋଟି କରି ନାମୋପାତ୍ତ ପୂର୍ବକ କହିଲେ ।

ଏହି ଘଟନା ଶ୍ରବଣରେ ଧର୍ମଯାଜକମାନେ ପ୍ରଚୁର କାର୍ଯ୍ୟରେ ବିବ୍ରତ ହୋଇ କହିଲେ ଯେ, "ଭାରତର ଜଳବାୟୁ ଏପରି ଅଛି ଯେ, ସମୟରେ ଭାରତୀୟ ହିନ୍ଦୁଧର୍ମାବଲମ୍ବିମାନଙ୍କୁ କେତେ ଧର୍ମାନ୍ତର ଶିକ୍ଷା ଦେଇଥିଲେ ସୁଦ୍ଧା ମୁହୂର୍ତ୍ତିକେ ପୁଣି ହିନ୍ଦୁରେ ପରିଣତ କରିଦେବ । ଅତଏବ, ଭାରତରେ ଆମ୍ଭମାନଙ୍କର ଉପସ୍ଥିତି ଏଣିକି ଆଉ ସମୁଚିତ ନୁହେଁ । ଆମେମାନେ ଏ ସ୍ଥାନ ଛାଡ଼ି ଆମଦେଶକୁ ଶୀଘ୍ର ଚାଲିଯିବା" ଏହା କହି ସେମାନେ ସ୍ୱଦେଶକୁ ପ୍ରତ୍ୟାବୃତ୍ତ ହେଲେ । ଏକଥା ଲିଖିତ ପୁସ୍ତକାକାରେ କଲିକତାର ପ୍ରଧାନ ପୁସ୍ତକାଗାର ବା "ଇମ୍ପିରିୟଲ୍ ଲାଇବ୍ରେରି"ରେ ଗଚ୍ଛିତ ଅଛି ।

ଅତଏବ କହା ଯାଉଚି, ଯେ, ଯେଉଁ ଭାରତବର୍ଷୀୟ ଜଳବାୟୁର ଏପରି ଅନିର୍ବଚନୀୟ ମହାପରିବର୍ତ୍ତନକାରୀ ଶକ୍ତି ଅଛି, ତାହାର ଆଉ କି ଅଭାବ ରହିପାରେ ? କେବଳ ଦେଶରେ ପ୍ରଚୁରକ ବା ପ୍ରୌଢ଼ାବସ୍ଥା ସମ୍ପନ୍ନ ପରିବ୍ରାଜକର ବ୍ୟବସ୍ଥା ହୋଇଗଲେ ଭାରତରୁ ଅଚିରେ ସକଳ ଦୁରବସ୍ଥା ଓ ଧର୍ମାନ୍ତର ଦୂରିଯିବ । ସେ ସମୟ ଆସି ଯାଉଚି । ଶମିତି ।

———

# ବାର୍ଦ୍ଧକ୍ୟ

ସେହି ଅନିର୍ବଚନୀୟ ନିରବଧିକାଳର ପ୍ରଖର ସ୍ରୋତରେ କେତେକେତେ ପ୍ରାଣୀ କ୍ଷଣେ କ୍ଷଣେ ଦେଖାଦେଇ, ପୁଣି ସେହି ପ୍ରବାହର ଅନୁକୂଳ ମୁଖହୋଇ ଲୁଚିଯାଇଥାନ୍ତି । କାଳ ଯଥାରୀତିରେ ଅନନ୍ତ୍ୟ ଦେଖାଇ ଚାଲିଛି । ଜ୍ଞାନ ବା ବିଜ୍ଞାନ ଦ୍ୱାରା ତାହାର ପ୍ରଖର ଗତିରୋଧ କରି ହୋଇ ନାହିଁ ଓ ହେବନାହିଁ । ସଂସାରର ପରିଚାଳନାପାଇଁ ସାଧାରଣ ମହାପୁରୁଷଙ୍କ ଆବିର୍ଭାବ ବା ତିରୋଭାବ ଠାରୁ ସୌରଗତି ନିୟମରେ ଅଙ୍କ ଗଣନା କରାଯାଇ ଥାଏ । ମହାପୁରୁଷ ବା ଯେ କେହି ହୁଅନ୍ତୁ ଏ ମର୍ତ୍ତ୍ୟରେ ଜନ୍ମ ହେବାମାତ୍ରେ କେତୋଟି କ୍ଷଣ ମଧ୍ୟରେ ପଞ୍ଚବସ୍ଥା ଭୋଗକରି ଅଦୃଶ୍ୟ ହୋଇଯାନ୍ତି । ତେବେ ଏତିକି ହୁଏ ଯେ, କେତେକ ମହାମାନବ ସେହି ଅବସ୍ଥା ମଧ୍ୟରେ ନିଜର ଅତୁଳନୀୟ ପ୍ରତିଭା ଦେଖାଇ ଏ ମର୍ତ୍ତ୍ୟ ଧାମରେ ଚିର ନମସ୍ୟ ବା ଚିରାର୍ଚ୍ଚନୀୟ ମାନ୍ୟ ହୋଇଥାନ୍ତି, କିନ୍ତୁ ଅବାରିତ କାଳର ଗତିରୋଧ କରି ପାରିନାହାନ୍ତି । କାଳ "ସର୍ବଂକଷ" ସେ କାହାଁରି କାହାକୁ ଅପେକ୍ଷା କରି ଚଳିବ ।

କ୍ଷଣ ଭଙ୍ଗୁର ମାନବର ପାଞ୍ଚଗୋଟି ଅବସ୍ଥା କେଡ଼େ ବେଗେ କୁଆଡ଼େ ବଦଳିଯାଇ, କାଳବ୍ୟାଳ ପରି ବାର୍ଦ୍ଧକ୍ୟାବସ୍ଥା ମାନବକୁ ଗ୍ରାସ କରିବାକୁ ମୁଖବ୍ୟାଦାନ କରିବସେ । ବ୍ୟାଳଚଳନ୍ତିରେ କୀଟାଦିଙ୍କି ଭକ୍ଷଣ କରି ଯେପରି ସଂସାରରେ ହାସ୍ୟାସ୍ପଦ ହୁଏ, ବାର୍ଦ୍ଧକ୍ୟରେ ମାନବ ଗୃହକଙ୍କାଳୀ ହେଲେ ସେହିପରି ହୁଏ । ଯେଉଁ ମାନବ ଯୌବନ ସମୟରେ ପ୍ରକୃତି ମଣ୍ଡନ ହୋଇ ସର୍ବଜନ ମନୋରମ ସୁଡ଼ୋଳ ଶରୀର ଦେଖାଇ ଥିଲା, ଆଜି ବାର୍ଦ୍ଧକ୍ୟ ସେହି ସୁନ୍ଦର ଶରୀରଟିକି କପରି କୁତ୍ସିତ, କଦାକାର ଜୀର୍ଣ୍ଣ, ଶୀର୍ଣ୍ଣ,

କରିଦେଉଛି । ମୁଖ ଶୋଭାବର୍ଦ୍ଧକ ଦନ୍ତଶ୍ରେଣିକୁ ବିସ୍ମୟକର ଭାବରେ ଫିଙ୍ଗିଦେଉଛି, ସୁନ୍ଦରିର କୁନ୍ତଳ ଚିକୁର ଗୁଚ୍ଛକୁ ମସ୍ତକରୁ ଶୁକ୍ଳକରି ଉପାଡ଼ ଦେଉଛି, ଦର୍ଶନ ଶକ୍ତିକୁ ନୟନ ଯୁଗଳରେ ରଖି ଦେଉନାହିଁ, କରଚରଣାଦିକ ଚଳନଶକ୍ତି ରହିତ କରିଦେଉଛି । ଆପାଦମସ୍ତକ ଶରୀରଟି ସକଳ ସମୟେ କମ୍ପିତ କରିଦେଉଛି, ଅଗ୍ନ୍ୟାଶକ୍ତିର ଅପକର୍ଷ ଦେଖାଇ, ମାନବକୁ ସୁଖାଦ୍ୟ ଗ୍ରହଣରୁ ଅନ୍ତର କରି ପାରୁଛି, ଶରୀର ଓ ବିଶେଷତଃ ମୁଖକୁ ଶ୍ଳେଷ୍ମାରେ ପୂର୍ଣ୍ଣ କରୁଛି, ଶେଷରେ ଶରୀରଟିକୁ ଅକର୍ମଣ୍ୟ କରି ବସାଇ ଦେଉଛି ।

ଶିକ୍ଷା ସମୟରେ ସଦ୍‌ଗୁରୁଙ୍କ ଶାସ୍ତ୍ରୀୟ ଉପଦେଶ ବୃଦ୍ଧକୁ ଏ ଅବସ୍ଥାରେ ଆଉ ସମ୍ପୂର୍ଣ୍ଣଭାବେ ସ୍ମରଣ ହୋଇ ପାରୁନାହିଁ; ସ୍ମୃତିଶକ୍ତିକୁ ମଧ୍ୟ ଏ ବାର୍ଦ୍ଧକ୍ୟ ବାଧାଦେଇ ମସ୍ତିଷ୍କରେ ସ୍ଥାନ ଦେଉନାହିଁ । ଏତେବେଳେ ମାନବ ଅନନ୍ୟୋପାୟ ହୋଇ ଏକମାତ୍ର ସର୍ବନିୟନ୍ତା ପରମାତ୍ମାଙ୍କ ନାମ କୀର୍ତ୍ତନ ରତହୋଇ ସମୟଟିକୁ ଅତିବାହିତ କରିବ ।

ମାନବ ଯଦି ବାର୍ଦ୍ଧକ୍ୟ ସମୟରେ ଅନନ୍ୟଗତିକ ହୋଇ ଯୌବନୋନ୍ମାଦନା ପ୍ରଯୁକ୍ତ ଅନାଚାର, ଅତ୍ୟାଚାର, ଧୃଷ୍ଟତା ପ୍ରଭୃତି ଦୁଷ୍କର୍ମ ଗୁଡ଼ିକର ଅନୁଚିନ୍ତାରେ ବିଶେଷ ଅନୁତପ୍ତ ହୋଇ ସର୍ବଶରଣ୍ୟ ପରମାତ୍ମାଙ୍କଠାରେ କେବଳ ଶରଣାପନ୍ନ ହୁଏ । ପ୍ରତି ମୁହୂର୍ତ୍ତରେ ମୃତ୍ୟୁର ବିଭୀଷିକା ଦେଖି ଜାଣିବହେଲେ, ଫଳତ କିଛି ହେବନାହିଁ । କାରଣ, ନିର୍ଦ୍ଦୟ ଭାବରେ ମୃତ୍ୟୁ ଆସି ନିଶ୍ଚୟ ଏ ଶରୀରଧାରୀ ଜୀବକୁ ଅତର୍କିତେ ଘେନିଯିବ, ଏଥିରେ ବା ସନ୍ଦେହର କାରଣ କ'ଣ ଅଛି ? ।

ପ୍ରାଣିର ଜୀବନକୁ ଯମ ନେଇଯାଏ, ତାହାର ସୁକର୍ମ ବା ଦୁଷ୍କର୍ମ ଅନୁସାରେ ନିଜର "ସଂଜୀବନୀପୁର"ରେ ଦଣ୍ଡ ମଣ୍ଡ ଦେବା ପାଇଁ । ଏହା ଆମର ପୌରାଣିକ ବଚନ । କିନ୍ତୁ "ଯମ" ଶବ୍ଦର ଆଉ ଗୋଟିଏ ଅର୍ଥ ଯେ, "ନିୟମ" ସେହି ନିୟମ ହେଉଚି ଅବସ୍ଥାଚକ୍ରର ଗୋଟିଏଥର ମାତ୍ର ଘୂର୍ଣ୍ଣନ, ଆଉ ତାର ଦ୍ୱିତୀୟବାର ଘୂର୍ଣ୍ଣନ ହେବନାହିଁ । ଏହା ନିୟତିର ନିର୍ଦ୍ଦେଶ । ସୁତରାଂ ମାନବ ଅବସ୍ଥାଚକ୍ରରେ ଗୋଟିଏଥର ମାତ୍ର ଘୂର୍ଣ୍ଣିତ ହୋଇ, ସଂସାରର ଲୀଳା ଖେଳା ସମାପ୍ତ କରେ । ଜୀବାତ୍ମାର ଶରୀର ଭିତ ଥାଇ ସୁଦ୍ଧା ସେ ଯଦି ସତ୍କର୍ମ ଯୋଗେ ବା ସଦ୍ଦୀକ୍ଷା ଯୋଗେ ନିଜର ଜୀବିତକାଳ ମଧ୍ୟରେ ଖେଳ ଗୁଡ଼ିକୁ ସୁରୁଚିର କରିଥାଏ, ତେବେ ସେ ଶିଶୁବତ୍ସଳା ମହାପ୍ରକୃତି ମା’ ଖେଳରେ ସନ୍ତୁଷ୍ଟା ହୋଇ, ପରମାତ୍ମାଙ୍କ ଦେହରେ ଲୀନ ହେବା ପାଇଁ ପୁରସ୍କାର ସ୍ୱରୂପ ବାଟ ବତାଇଦିଏ । ମହାପ୍ରକୃତିର ବିନା ଅନୁମତିରେ ଜୀବାତ୍ମା କେବେହେଲେ ପରମାତ୍ମାଙ୍କ ଆଡ଼କୁ ଯିବାପାଇଁ ବାଟ ଖୋଜି ଦେଖି ପାରେନାହିଁ । ଅତଏବ, ଶଙ୍କରାଦି ମହାଯୋଗୀମାନେ ସର୍ବସ୍ୱ ତ୍ୟାଗ କରି ଏକମାତ୍ର ମହାପ୍ରକୃତିଚିନ୍ତା ବା ଉପାସନାରେ ନିଜର ଜୀବନ ଉତ୍ସୃଷ୍ଟ କରିଥାନ୍ତି । ଏଥିରୁ ଜଣାଯାଏ ଯେ, ଜୀବାତ୍ମା ଏକମାତ୍ର ପ୍ରକୃତିଙ୍କ ମନାଇଁ ପାରିଲେ, ଏ ସଂସାରର ଯନ୍ତ୍ରଣାରୁ ଅବ୍ୟାହତି ପାଇପାରେ । ତାହା କରି ପାରିଲେ ମାନବ ବାରମ୍ବାର ନାନା ଯୋନିଗତ ଯନ୍ତ୍ରଣା ଭୋଗ କରି ମର୍ତ୍ତ୍ୟରେ ଜନ୍ମ ହେଉଥାଏ ।

ଅତଏବ ଶଙ୍କର କହିଛନ୍ତି: —

"କାତେ କାନ୍ତା କସ୍ତେ ପୁତ୍ରଃ ସଂସାରୋଽୟମତୀବ ବିଚିତ୍ରଃ
କ୍ଷଣମିହ ସଜ୍ଜନ ସଙ୍ଗତିରେକା ଭବତି ଭବାର୍ଣ୍ଣବତରଣେ ନୌକା"

ଶଙ୍କର ସଂସାରକୁ ଗୋଟିଏ ଅକୂଳ ସମୁଦ୍ର ସଙ୍ଗେ ତୁଳନା କରି ଲେଖିଅଛନ୍ତି, ଯେ, ଏ ଅନନ୍ତ ସଂସାର ସାଗରରେ କିଏ ବା ତବ ଜାୟା, କିଏ ବା ପୁତ୍ର, କିଏ ବା ତୁମର ସହାୟକ ? କିଏ କାହାର ନୁହେଁ, ଏ ଜୀବ ଆସିଛି ଏକା, ଯିବ ମଧ୍ୟ ଏକୁଟିଆ ହୋଇ । ଅଜଣାରେ ଯିମିତ ଆସିଛି ସଂସାରକୁ, ଏଥିରୁ ବିଦାୟ ନେବ, ସେହିପରି ଅଜଣାରେ । ଏ ସଂସାର ସମୁଦ୍ର ତରଣରେ ଏକମାତ୍ର ତରଣୀ ସ୍ୱରୂପ "ସଜ୍ଜନସଙ୍ଗତ" ଓ ସନ୍ତୁଷ୍ଟାଭାବ ହୋଇଥାଏ ।

ଲୋକର ଗୃହସ୍ଥାଶ୍ରମଟି ଏତିକିବେଳେ ପୂର୍ଣ୍ଣମାତ୍ରାରେ ସେବା ଶୁଶ୍ରୂଷା କରି, ପୁତ୍ର କଳତ୍ରାଦିମାନେ ବାର୍ଦ୍ଧକ୍ୟଗତ କେତେକ ଦୁଃଖ କଷ୍ଟର ଉପଶମ କରିଦିଅନ୍ତି । କିନ୍ତୁ ଶରୀରର ଦୋର୍ବଲ୍ୟତା ବା ଅବସନ୍ନତାକୁ କିଏ ବା ଦୂର କରିପାରିବ ? ବାଲ୍ୟରେ ବାଳକଠାରେ ଯାହା ଯାହା ଦେଖାଯାଏ, ବାର୍ଦ୍ଧକ୍ୟରେ ମଧ୍ୟ ସେହି ସେହି ଲକ୍ଷଣ ଗୁଡ଼ିକ ଦେଖାଦିଏ । ବାଳକ ଗୃହରପାରରେ ନାହିଁ, ଗୃହରେ ଗୋଡ଼ ଥୟ ନରହି ଏଣେତେଣେ ଖସିଯାଏ । ଦନ୍ତ ବିହୀନ ମୁଖରେ ନିର୍ମଳ ଉଚ୍ଚାରଣ ହୋଇ ନପାରି କଥା ଗୁଡ଼ାକ ବୁଝି ହୁଏନାହିଁ, ପୁଣି ମୁଖରୁ ଅବିରତ ଲାଳଗୁଡ଼ାଏ ସ୍ରବୁଥାଏ, ସାମାନ୍ୟ କଥା ଗୁଡ଼ାକରେ ଅତୃପ୍ତ ହୋଇ, ଅଭିମାନ-ଭରେ ପାଟି ମେଲାକରି ଏକାପରି ରୋଦନ କରିବସେ, ସାଧାରଣ ଖାଦ୍ୟ ପଦାର୍ଥ ଦେଖିଲେ, ଗୁରୁତର ଲାଳସା ଜନ୍ମି ହଟିବସେ । ସମୟେ ସମୟେ ଅଭିମାନ ପୂର୍ଣ୍ଣ କଥା କହି ବୃଦ୍ଧ ବ୍ୟକ୍ତି ମଧ୍ୟ ଶୁଭ୍ର ଶଯ୍ୟା ମଧ୍ୟରେ ବା ଶଯ୍ୟାସ୍ଥରେ ମଳ ମୂତ୍ର ତ୍ୟାଗାଦି କରି, ଉତ୍ଥାନ ଶକ୍ତି ରହିତ ହୋଇ ସମ୍ପୂର୍ଣ୍ଣ ବାଳକବତ୍ ଚେଷ୍ଟା ପ୍ରକାଶ କରେ । ଅତଏବ "ବାଳବୃଦ୍ଧ ସମାନ" ବୋଲି ଲୋକୋକ୍ତି ବରାବର ଅଛି ।

ଏପରି ସକଳ ଶକ୍ତି ବନାଶିନୀ ଇସବସ୍ଥାରୁ କବଳରୁ ନିସ୍ତାର ଲଭିବା ପାଇଁ ଜ୍ଞାନୀମାନେ ଅନନ୍ତକାଳରୁ ଭାବନା କରି ଅସୁଅଛନ୍ତି । "ଭିନ୍ନରୁଚିହିଁ ଲୋକଃ" ନ୍ୟାୟରେ ଜ୍ଞାନୀଜନମାନେ ନାନା ପ୍ରକାର ମତ ପ୍ରକାଶ କରି ବଭିନ୍ନ ଗ୍ରନ୍ଥମାନ ଲେଖିଦେଇ ସ୍ୱସ୍ୱ ମତାନୁଯାୟୀ ଜନସମାଜରେ ପ୍ରତ୍ୟେକେ ଗୋଟିଏ ଗୋଟିଏ ଦଳର ସୃଷ୍ଟିକରି, ଅଦ୍ୟାପି ସେହି ଦଳର ଅଭିବୃଦ୍ଧିରେ ତତ୍ତ୍ୱାବଲମ୍ବିମାନେ ଅପ୍ରାଣଚେଷ୍ଟା କରି ଆସୁଅଛନ୍ତି । କିନ୍ତୁ ତାହାର ସମୁଚିତ ବ୍ୟବସ୍ଥା ହୋଇ ପାରିନାହିଁ । ସ୍ୱୟଂ ଭଗବାନ୍ ଭୂଭାର ହରଣ ନିମନ୍ତେ ଇହସଂସାରରେ ମାନବରୂପରେ "ରାମ, କୃଷ୍ଣ." ନାମ ଗ୍ରହଣ କରି ସୁବ୍ୟବସ୍ଥା ହୋଇଥିଲେ । ସେପରି ମହାପୁରୁଷମାନେ ଏ ମର୍ତ୍ତ୍ୟରେ କେତେ ଦେଖାଦେଇ, ସେହି ନିୟତ ନିୟମିତ ଅବସ୍ଥା ଗୁଡ଼ିକ ଭୋଗି ଯାଇଛନ୍ତି, କାହିଁ ସେମାନେ ତ ଅବସ୍ଥାଚକ୍ରର ଯେ, ଏକ ବେଢ଼ା ଘୂର୍ଣ୍ଣନକୁ ବଦଳାଇ ଦ୍ୱିତୀୟ, ତୃତୀୟବାର ଘୂର୍ଣ୍ଣନ କରିଦେଇ ପାରିଲେ ନାହିଁ !! ଏହାର କାରଣ ସ୍ୱରୂପ ଲୌକିକ ରାଜନୀତି ହିଁ ତୃଷ୍ଣାନୁରୂପେ ଧରିଯାଉ । ସମସ୍ତ ରାଜନୀତି ପ୍ରଣେତାମାନେ ଯେଉଁ ନିୟମ ସବୁ ପ୍ରଣୟନ କରି ଦେଇଛନ୍ତି, ତାହା ସବୁ କେବଳ ପ୍ରଜାଙ୍କ ପାଇଁ ନୁହେ, ରାଜା ପ୍ରଜା ଉଭୟେ ପାଳନ କରିବା ପାଇଁ ଉଦ୍ଦିଷ୍ଟ । ତାହା ନୋହିଲେ, ସେ ନୀତରେ ଗଣ୍ୟ ନୁହେ । ସୁତରାଂ ସେହି ନୀତି ଗୁଡ଼ିକ ଲୋକ ସମାଜରେ ସମ୍ୟକ୍ ଚଳାଇବାଲାଗି, ରାଜକୀୟ କର୍ମଚାରୀ ନିଯୁକ୍ତ କରି ଦିଆଯାଏ । ସେମାନେ ଦଣ୍ଡମଣ୍ଡର ଅଧିକାର ଲଭି, ସମାଜରେ ଯଥା ନିର୍ଦ୍ଦିଷ୍ଟ ନିମ୍ନୋକ୍ତ ପରିଚାଳନା କରନ୍ତି । କୌଣସି ସ୍ଥଳରେ ତାହାର ଟିକିଏ ବ୍ୟତିକ୍ରମ ଦେଖାଦେଲେ, କର୍ମଚାରୀମାନେ ସତ୍ତ୍ୱର ତାହାର ପ୍ରତିବିଧାନ କରି ଯୁଆରି ଦିଅନ୍ତି ।

ସେହିପରି ରାମ ଏବଂ କୃଷ୍ଣ ଯୋଡଶ ଯୁଗରେ ଅବତୀର୍ଣ୍ଣ ହୋଇଥିଲେ । ପରମାତ୍ମାଙ୍କର ଦୁଇଟି ରୂପରେ ପୃଥିବୀରେ ବିକାଶ ହୋଇଥିଲା । ସେହି ପରମାତ୍ମାଙ୍କ ନିର୍ଦ୍ଦେଶରେ ସୂର୍ଯ୍ୟ, ଚନ୍ଦ୍ର, ଆକାଶ, ବାୟୁ, ଅଗ୍ନି, ଜଳ, ପୃଥିବୀ, ଅନ୍ୟର ଇନ୍ଦ୍ର ଓ ନକ୍ଷତ୍ର, ଏମାନେ ଉଠଲେମାନ ପରମାତ୍ମପ୍ରଣୀତ ନିୟତ ନିୟମ ଲଙ୍ଘି ଯେ ଯାହା କକ୍ଷମାନଙ୍କରେ ଅବସ୍ଥିତ ରହି, ବିଶ୍ୱକଲ୍ୟାଣ ସାଧନରେ ସହାୟତା ଦେଖାଇ ଅସୁଚନ୍ତି । ଯଦି ରାମ, କୃଷ୍ଣ ପ୍ରଭୃତି ମହାପୁରୁଷମାନେ ଭଗବାନଙ୍କର ରୂପାନ୍ତର ବୋଲି ସେ ନିୟମ ଲଙ୍ଘି ଦିଅନ୍ତେ, ତେବେ ତଦାଦିନ୍ତ ନିୟତ ସମ୍ପୂର୍ଣ୍ଣ ଅଧିକାରଣୀ ହୋଇ, ଛାଡ଼ି ଦିଅନ୍ତା କି ? ମାନବରୂପରେ ଦେଖାଦେଲେ ବୋଲି ନିୟତ ସେମାନଙ୍କୁ ଅବସ୍ଥାଚକ୍ରରେ ବସାଇ ମନୁଷ୍ୟମାନଙ୍କ ପରି ଗୋଟିଏ ମାତ୍ର ଖେଳ ବୁଲାଇ ଦେଇ ମହାତ୍ମାଗଣଙ୍କୁ ସଂସାରରୁ ବିଦାୟ ଦେଲା । ସୁତରାଂ ପରମାତ୍ମାଙ୍କ ପ୍ରଣୀତ ନିୟମ ସେ ନିଜେ ତାହା ପାଳନ କରିବାକୁ ବାଧ୍ୟ । ଇତର ପ୍ରାଣୀ ଅବା ତହିଁରେ ହସ୍ତକ୍ଷେପ କରିବ କିପରି ? । ବୃଥା ଦୁଃସାହସ କେବଳ ଏ ମର୍ତ୍ତ୍ୟରେ ସମୟେ ସମୟେ ଦେଖା ଦେଉଛି ।—

ଏହି ନିରବଧିକାଳରେ ମାନବର ଜନ୍ମ, କିନ୍ତୁ କେବେହେଲେ କାଳ ବୃଦ୍ଧି ହୁଏନାହିଁ, କେବଳ ଜନ୍ମି ଜୀର୍ଣ୍ଣ ହୋଇଯାଏ, ଜନ୍ମିର ଦେହରୁ ଜନ୍ମିଥାଏ ତୃଷ୍ଣା, ସେ କେବେହେଲେ ଜୀବିତାବସ୍ଥାରେ ଜୀର୍ଣ୍ଣ ବା ବୃଦ୍ଧ, ହୁଏନାହିଁ, କିନ୍ତୁ ଶରୀର ଜୀର୍ଣ୍ଣ ହୋଇଯାଏ । ସୁତରାଂ ଗୋଟିଏ କବି ଉକ୍ତି ଅଛି—

"କାଳୋ ନ ଜୀର୍ଣ୍ଣୋ ବୟମେବ ଜୀର୍ଣ୍ଣାଃ ।
ତୃଷ୍ଣା ନ ଜୀର୍ଣ୍ଣା ବୟମେବ ଜୀର୍ଣ୍ଣାଃ ॥"

ଅତଏବ ବୈଦାନ୍ତିକମାନେ "ମାୟା" ଉଦ୍ଭାବିତ ସଂସାର କେବଳ ଅନିତ୍ୟ କହୁଥାନ୍ତି । ମାନବର ନିଦ୍ରା ସମୟରେ ସ୍ୱପ୍ନ ବୋଲି ଯାହାକୁ କହାଯାଏ, ତାହା ଜୀବର ସ୍ୱତନ୍ତ୍ର ସଂସାର ସୃଷ୍ଟି ମାତ୍ର, ସେହି ମତବାଦ୍ରବିତ ସୃଷ୍ଟିରେ ନିଜେ ଜୀବାତ୍ମା, ବୃକ୍ଷ, ନଦୀ, ସମୁଦ୍ର, ବନ, ପର୍ବତ, ଇତରପ୍ରାଣୀ ଓ ଶ୍ରେଷ୍ଠପ୍ରାଣୀ-ମାନବ ପର୍ଯ୍ୟନ୍ତ କଳ୍ପନା ପ୍ରସୂତ କରି ସେ ସମୁଦାୟରେ ନିଜେ ଜୀବ ନାନାଭାବରେ ବିହାରିତ ହୋଇ, ହର୍ଷ, ବିଷାଦ, ଆନନ୍ଦ ପ୍ରମୋଦ ପ୍ରଭୃତି ସଂସାରିକ ଭାବ ସକଳ ପ୍ରଦର୍ଶନ କରେ ।

ମାୟାବାଦୀମାନେ କହନ୍ତି ଯେ, ତାହା ନିଦ୍ରାବସ୍ଥାରେ କ୍ଷଣିକ ସ୍ୱପ୍ନ ସତ୍ୟ, କିନ୍ତୁ ଜାଗ୍ରତାବସ୍ଥାରେ ଦିବା ରାତ୍ରି ଭେଦରେ ସଂସାର ଗୋଟିଏ ଦୀର୍ଘସ୍ଥାୟୀ (ଷାଠିଏବର୍ଷୀୟ) ସ୍ୱପ୍ନ । ଏଥି ବିଷୟରେ ଅନେକଙ୍କ ସମ୍ମତି, କେତେକ ମଧ୍ୟ ଅସମ୍ମତ । କିନ୍ତୁ ବର୍ତ୍ତମାନ ଯେଉଁ "ଚଳଚିତ୍ର" ପ୍ରଦର୍ଶନ ହୁଏ, ତଦ୍ଦ୍ୱାରା ମାୟାବାଦ ବୋଧହୁଏ ସର୍ବବାଦୀସମ୍ମତ ଜାଗ୍ରତ ସ୍ୱପ୍ନ ହୋଇ ପାରିବ । ସକଳମାନବ ଜାଗ୍ରତ ଅବସ୍ଥାରେ ପ୍ରତିଦିନ ସେହି ଚଳଚିତ୍ର ଦର୍ଶନ କରି ଆନନ୍ଦ ଉପଭୋଗ କରୁଛନ୍ତି । ସୁତରାଂ ଜାଗ୍ରତ ସ୍ୱପ୍ନ ଗୋଟାଏ ଅସମ୍ଭବ ପ୍ରଳାପ ବୋଲି ଆଉ କହି ହେବନାହିଁ । ଯେହେତୁ ସମସ୍ତେ ସେଥିରେ ଅନୁଭବୀ । ଏହି ଜାଗ୍ରତ "ସ୍ୱପ୍ନ" ନିୟତ ନିବଦ୍ଧ ମାନବୀୟ ଜୀବନ କାଳଟିକୁ ଦୁ’ଗୋଟି ଅବସ୍ଥାରେ ବିଭକ୍ତ କରିଦେଇ, ପ୍ରାଥମିକ ଦୃଶ୍ୟରାଜିରେ ଜୀବ ମୁଗ୍ଧ ହୋଇ ଯାଉଛି !—

ସ୍ୱପ୍ନ ସଦୃଶ ସାଂସାରିକ ଦୃଶ୍ୟ ଦର୍ଶନରେ ଅତିରିକ୍ତ ମମତା ରଖି ଅତ୍ୟାସକ୍ତହେବା ଅନୁଚିତ ବୋଲି ସକଳ ଶାସ୍ତ୍ର ଓ ପୁରାଣ,

ବିଶେଷତଃ ଭଗବଦ୍‌ଗୀତାରେ ଉଲ୍ଲିଖିତ ହୋଇଅଛି । ଉପଭୋଗ ଲାଲସୀ ଯୌବନ, ଏ ସମସ୍ତ ଉପଦେଶକୁ ମାନବ ହୃଦୟରେ ସ୍ଥାନ ଦିଏ ନାହିଁ । ଅଦ୍ଭୁର ଉଦ୍ଧତପଣ ଦେଖାଇ ଅଯଥା କର୍ମ ଗୁଡ଼ାଏ କରିପକାଏ, ଯେଉଁ କର୍ମଦ୍ୱାରା ନିଜର ଭବିଷ୍ୟତ ଏକବାରେକେ କଳୁଷିତ ହୋଇଯାଏ । ଫଳସ୍ୱରୂପ ଅନ୍ତିମ ଜୀବନରେ ଅନନ୍ତ ଯାତନା, ମନୋବେଦନା, ଶାରୀରିକକ୍ଲେଶ, ଅଧିଭୌତିକ ଦୁର୍ଦ୍ଦମନୀୟ ଦୁଃଖ ଯନ୍ତ୍ରଣା ଅନୁଭବ କରି ଜୀବ ଭବଖେଳା ସାଙ୍ଗକରେ । ଏହା ସବୁ ନ ଘଟୁଚି ବୋଲି କେତେ ଦୁଃସାହସିକ ହୋଇଥିଲେ ମଧ୍ୟ ଲୋକେ କେତେବେଳେ କହି ପାରିବନାହିଁ । ସୁତରାଂ ଅକର୍ତ୍ତବ୍ୟ ଅବସ୍ଥାରେ ଲୋକେ ନିରାଶପୂର୍ଣ୍ଣ ହୃଦୟରେ ଡାକିଦଅନ୍ତି, "ନିରାଶ୍ରୟଂ ମାଂ ଜଗଦୀଶ ରକ୍ଷ" ସେତେବେଳେ ଆଉ ଭରଷା ବା ସମ୍ବଳ କାହୁଁହେଲେ ଦେଖାଯାଏ ନାହିଁ । ସ୍ୱର୍ଜିତ ସମ୍ପଦ ଛଡ଼ା ଆଉ କେହି ପିଠିରେ ପକାଇ ପାରିବେ ନାହିଁ । ଅନ୍ୟାନ୍ୟ, ପୁତ୍ର, ଦାରା, କନ୍ୟା ଚରସ୍ଥିର ସମସ୍ତ ସକଳ ଯଥା ସ୍ଥାନରେ ସେହିପରି ସଞ୍ଚିତ ହୋଇଥିବ ମାତ୍ର । ଯୌବନରେ ଯାହା ସବୁ ପରମୋପଯୋଗୀ ମନେ କରୁଥିଲା, ଏ ଘୋରତର ଯାତନାପ୍ରଦ ·ଅବସ୍ଥାରେ ତାହା ଉପଯୋଗ କରି ହେବନାହିଁ । କେବଳ ନିରାଶ ନୟନ ଯୁଗଳରେ ବୁଲି ବୁଲି କରି ଗୃହୁଁଥିବ, ଅପରବ୍ୟକ୍ତି ତହିଁରେ ପୁରା ଅଧିକାର କରି ବସିବ । ଯଦି ବୃଦ୍ଧ କ୍ଷୀଣକଣ୍ଠରେ ଟିକିଏ ପରୁଷୋକ୍ତି କରି ବସେ, ତେବେ ଉପହାସର ପାତ୍ର ବିବେଚିତ ହୋଇ ଅପମାନ ଲଭେ । ଇତରଲୋକେ ସେତେବେଳେ କୁହା ବୋଲି ଡରନ୍ତି ଯେ, ଏ ବୃଦ୍ଧ ଏତେ କୃପଣ ଯେ, "ଓଦା ହାତରେ କୁଆକୁ ମଧ୍ୟ ମାରେ ନାହିଁ" । କାରଣ, ହାତରେ ଲାଗିଥିବା ପାଣି ଟିକକ କାଳେ କୁଆର ପକ୍ଷରେ ଲାଗିଯିବ ! । ଏଥିବିଷୟରେ କବି କହୁଛନ୍ତି —

"ଉପଭୋକ୍ତୁଂ ନଜାନାତି ସ୍ୱଭାବତ୍ କୃପଣୋଜନଃ ।
ଆକଣ୍ଠ ଜଳମଗ୍ନୋଽପି କୁକ୍କୁରୋ ଲେଢ଼ିଜହ୍ୱୟା ॥"

ଅତି କୃପଣତା ଯୋଗରୁ ଲୋକ ଏଭଳି ଉପାୟ ବଳରେ ବହୁ ସମ୍ପଦ ଅର୍ଜି ଥିଲେମଧ୍ୟ ଦାନ ଧର୍ମ ଦୂରରେ ଥାଉ, ନିଜେ ଭଲ ପିନ୍ଧିବା କି ଭଲ ପଦାର୍ଥ ବା ଦୁର୍ମିଳ ସୁମଧୁର ପଦାର୍ଥ କେବେହେଲେ ଅଣ୍ଟାରୁ ପଇସା ବାହାର କରି କିଣି ଖାଇନାହିଁ କି ପିନ୍ଧିନାହିଁ । ସବଳ ଅବସ୍ଥାରେ ତ ସେପରି କରିଚି, ଏ ଦୁର୍ବଳ ଅବସ୍ଥାରେ ଆଉ କି ସୁଖ ପାଇବ ? କିଏ ବା ଏ ଲୋକର କଥା ନ ଜାଣିଚି ଯେ, ଏହାକୁ ସାହାଯ୍ୟଦେବ ? ଏପରି ଧନ ଗୁଡ଼ାଏ ସଞ୍ଚିତ କରି, ଦାନ ଉପଭୋଗ ନକରି ଯଦି ଏପରିଲୋକ ଧନୀ ବୋଲାଏ, ତେବେ ଇତର ଲୋକ କାହିଁକିବା ଧନୀ ନ ବୋଲାଇବେ ?—

ଏଥି ବିଷୟରେ ମଧ୍ୟ କବି ଉକ୍ତି ଅଛି—

"ଦାନୋପଭୋଗହୀନେନ ଧନେନ ଧନିନୋଯଦି ।
ପୃଥ୍ୱୀଖାତ ନିଖାତେନ ଧନେନ ଧନିନୋବୟଂ ॥"

ଦାନ ବା ଉପଭୋଗ ନକରି କେବଳ ଅର୍ଜ୍ଜନ ଧନସଞ୍ଚୟ କରିବାରେ ଲାଗିପଡ଼ି ଯଦି ଧନ ଜଗୁଆଳ ନୋହୁ, ଧନୀ ବୋଲାଏ, ତେବେ ଇତର ପ୍ରାଣୀ ଧନାଭାବରୁ ଦାନାଦି ନ କରିବି, ଧନୀ କାହିଁକି ନ ବୋଲାଇବ ? ଏ ରତ୍ନଗର୍ଭା ଧରିତ୍ରୀମଣ୍ଡଳରେ ଯେତେ ଯେତେ ଧନସମ୍ପଦ ଲୁକ୍କାୟିତ ଭାବରେ ଧରିତ୍ରୀଗର୍ଭସ୍ଥ ହୋଇଅଛି,—ସେ ସମସ୍ତ ସମ୍ପଦର ଆମେ କେବଳ ମାଲିକ କାହିଁକି ବା ନୋହିବୁ ? ଅତଏବ କହାଯାଏ ଯେ, ଲୋକ ନିଜର କର୍ମଦକ୍ଷତା ବଳରେ ବହୁଧନ ଉପାର୍ଜନ କରିପାରିଲେ, ତାହା ଯଥାଶକ୍ତି ଇତର

ସାଧାରଣ ପ୍ରାଣୀର କଲ୍ୟାଣରେ ବିନିଯୋଗ କରିବା ଉଚିତ, ସେହି ଧନକୁ ଲୋକେ ସଦ୍ଧନ ବୋଲି କହିଥାନ୍ତି । ଧନୀଙ୍କର ମନରେ ସ୍ୱାର୍ଥପରତା ଥିବାରୁ ଏ ସଦ୍‌ଭାବ ଜନ୍ମି ପାରୁନାହିଁ । ସୁତରାଂ ସଂସାରରେ ଏତେ ପ୍ରକାର ଦ୍ୱନ୍ଦ୍ୱ ଅନବରତ ଲାଗିରହୁଛି । ତାର ଅନ୍ୟ ପ୍ରତିକାର ଚିନ୍ତା ସହଜରେ ହୋଇ ପାରୁନାହିଁ । ଅତଏବ ସବଳ ସୁନ୍ଦର, କର୍ମଦକ୍ଷ ଅଯୌବନ ଅବସ୍ଥାଟିକୁ ସଂଯତ ଭାବରେ କଟାଇ ନେବା ପାଇଁ ସବଳ ସୁନ୍ଦର, କର୍ମଦକ୍ଷ ଯୌବନ ଅବସ୍ଥାଟିକୁ ସଂଯତ ଭାବରେ କଟାଇ ନେବାପାଇଁ ସକଳ ଶାସ୍ତ୍ରାଭ ଣୀତ ପ୍ରଣେତାମାନେ ବହୁ ଯୁଗରୁ ଉପଦେଶମାନ କେବଳ ମୌଖିକ ପ୍ରକାଶ ନ କରି, ଗ୍ରନ୍ଥକାରେ ଲିପିବଦ୍ଧ କରିଯାଇ ଅଛନ୍ତି । ପୁଣି ଅନ୍ୟ ଦୃଷ୍ଟାନ୍ତ ପ୍ରଦର୍ଶନ କରିବା ମାନସରେ ପାରିବାରିକ ଓ ସାଂସାରିକ ଜଞ୍ଜାଳ ଜାଲରୁ ମୁକୁଳିବା ପାଇଁ ସର୍ବତ୍ୟାଗୀ ହୋଇଥାନ୍ତି । ଏହାର ଭୂରି ଭୂରି ପ୍ରମାଣ ପୁରାଣ ଗୁଡ଼ିକରେ ମିଳିପାରିବ । ତାହା ସବୁ ପଢ଼ି ଜାଣିଲେ ମଧ୍ୟ ଆଚରଣ କରିବା ଲୋକ ଏ ଯୁଗର ପ୍ରଭାବରେ ଅତି ଅଳ୍ପ ବୋଲି ମନେ ହୁଏ । ଏଥିଲାଗି ଦୁଷ୍କର୍ମର ପ୍ରାୟଶ୍ଚିତ୍ତ ବିଧାନ କରା ହୋଇଥିଲା । ପ୍ରାୟଶ୍ଚିତ୍ତର ଅର୍ଥ ଦୁଷ୍କର୍ମ ଜନିତ ଅନୁତାପାନଳ ଦଗ୍ଧ ଲୋକ ଆଉ କୌଣସି ପ୍ରକାରେ ଦୁଷ୍କର୍ମ ଲିପ୍ତ ହୁଏନାହିଁ । ସୁତରାଂ ସତ୍କର୍ମରେ ମନ ତାର ସତତ ଅଭିନିବିଷ୍ଟ ରହେ । ଅତଏବ ମାନବର ଜୀବନ ଦୁଃଖଭରାକ୍ରାନ୍ତ ନ ହୋଇ ଶାନ୍ତିମୟ ହୁଏ ।

ପ୍ରବୃତ୍ତି ମାର୍ଗରେ ଚାଲିବା କେବଳ ଯୌବନରେ, ସେଥିପାଇଁ ଯାହା ଯାହା ଦରକାର ତାହା ସବୁ ସମାଜ ଯୋଗାଇ ଦିଏ । ବିଭିନ୍ନ ରସ ପ୍ରଧାନ ନ କରି ନାନାବିଧ କାବ୍ୟସୃଷ୍ଟି କରାଯାଏ ।

ଶ୍ରାବ୍ୟ କାବ୍ୟ ଓ ଦୃଶ୍ୟକାବ୍ୟ ଗୁଡ଼ିକରେ ସାମାଜିକ ନିୟମ ଓ ଅସଦାଚରଣର ପରିଣାମ ପ୍ରଦର୍ଶନ କରି ଦୃଶ୍ୟ ଗୁଡ଼ିକରେ ଦେଖାଇ ଦିଆ ଯାଇଥାଏ । ଦର୍ଶକମାନେ ତାହା ସବୁ ଦେଖି ନିଜ ନିଜର ଦୋଷ ମାର୍ଜନା କରନ୍ତି ଓ ଗୁଣ ଗ୍ରହଣ କରନ୍ତି । ଏଥି ପାଇଁ ଏ ଦୃଶ୍ୟ କାବ୍ୟ ବା ନାଟକର ସୃଷ୍ଟି । ଶ୍ରାବ୍ୟ କାବ୍ୟ ଗୁଡ଼ିକରେ ଶୃଙ୍ଗାର, ବୀର, କରୁଣ, ହାସ୍ୟ, ଭୟାନକ ଓ ଅଦ୍ଭୁତରସର ପ୍ରାଧାନ୍ୟ ରଖି, ଗୋଟିଏ ଗୋଟିଏ କାବ୍ୟରେ ଏଥିରୁ ଗୋଟିକର ପ୍ରାଧାନ୍ୟ ଥାଇ, ଅପର ରସମାନଙ୍କର ଅଙ୍ଗାଙ୍ଗୀ ଭାବ ରହିଥାଏ । ଲୋକ ସମାଜ ଅଭିରୁଚି ଅନୁସାରେ ପୁଣି ଅବସ୍ଥାର ପ୍ରେରଣାରେ ଇଚ୍ଛାମତେ କାବ୍ୟରୁ ରସଗତ ଭାବ ଗୁଡ଼ିକ ଗ୍ରହଣ କରିଥାଏ । ବିରରସୋଦ୍ଦୀପକ ଭାବ ଅବଗତ ହୋଇ କେତେକ ଲୋକ ଆନନ୍ଦ ଉପଭୋଗ କରନ୍ତି, କେତେକ ଅଦ ବା ଶୃଙ୍ଗାରରସରେ ନିଜ ନିଜର ମନକୁ ନିମଜ୍ଜିତ ରଖନ୍ତି, କେତେ ବା ସ୍ତୁତିର ପଦ୍ୟାବଳି ଶ୍ରବଣରେ ପ୍ରମୁଦିତ ହୁଅନ୍ତି । ଏହିପରି ନାନା ପ୍ରକାର ଲୋକ ଯଥା ରୁଚି ପ୍ରମୋଦମାର୍ଗକୁ ସେହି କାବ୍ୟରୁ ବାଛି ନିଅନ୍ତି ।

ଆଉ ଗୋଟିଏ ମାର୍ଗ ହେଉଛି ନିବୃତ୍ତି, ଏହି ନିବୃତ୍ତିମାର୍ଗଟି ସହଜ ଗମ୍ୟ ନୁହେଁ । ଏହି ମାର୍ଗଟିରେ ଗମନ କରିବାକୁ ହେଲେ, ବହୁତର କଷ୍ଟ, ଯାତନା, ପାଇବାକୁ ହୋଇଥାଏ । କେବଳ ମାନସିକ ଦୃଢ଼ତର ପ୍ରତିଜ୍ଞାବଳରେ ଲୋକ ବଳୀୟାନ୍ ହୋଇଥିଲେ, ସେ ପଥରେ ପଥିକ ହେବ, ନୋଚେତ୍ ସେ ପଥରେ ଗତିକରିବା ଅସମ୍ଭବ ହେବ । ଅତଏବ ନିବୃତ୍ତି ପଥଗାମୀ ଲୋକଙ୍କୁ ମନୀଷିମାନେ ମହାପୁରୁଷ, ବା ଯୁଗସ୍ରଷ୍ଟା ବୋଲି ଆଖ୍ୟା ପ୍ରଦାନ କରିଥାନ୍ତି ।

ମାନବ ସାଧାରଣର ସହଜଗମ୍ୟ କରିବା ପାଇଁ ପୁରାଣ ବା ଦର୍ଶନ ଶାସ୍ତ୍ରାଦିରେ ସୁଗମ ଓ ସୁବୋଧ ଦୃଷ୍ଟାନ୍ତ ବା ଉଦାହରଣମାନ ଦେଇ ମାନବ ସମାଜକୁ ବୁଝାଇ ଦିଆ ଯାଇଥାଏ । ସେହି ଦୃଷ୍ଟାନ୍ତ ଗୁଡ଼ିକ ଶୁଣିବା ଦ୍ୱାରା ଜନସାଧାରଣର ମନରେ ଏପରି ଚୋଟିଏ ଗୋଟିଏ ଧାରଣା ଜନ୍ମିଯାଏ ଯେ, ଲୋକେ ଆଉ ହୀନ ଆଚରଣ କରିବାକୁ ଇଚ୍ଛା କରନ୍ତି ନାହିଁ । ହୀନ ବା ନୀଚ୍ୟ କର୍ମ କରିବାକୁ ଆତ୍ମପ୍ରବୃତ୍ତି ବା ଇନ୍ଦ୍ରିୟ ପ୍ରବୃତ୍ତି ଆସିଲାବେଳେ ସେହି ପୁରାଣ ବର୍ଣ୍ଣିତକଥା ମନରେ ଉଦିତ ହୋଇ, ଲୋକଙ୍କୁ ସେଥିରୁ କୁମାର୍ଗରୁ ନିବର୍ତ୍ତାଇ ଦେବାକୁ ସମର୍ଥ ହୁଏ । ଶାସ୍ତ୍ରୀୟଜ୍ଞାନର ପ୍ରଭାବରେ ସଂସାରକୁ ଲୋକ ଅନିତ୍ୟ ବୋଲି ଜ୍ଞାନଚକ୍ଷୁରେ ଦେଖେ ? ଅତଏବ ଜ୍ଞାନଚକ୍ଷୁ ବିହୀନ ଲୋକଙ୍କୁ ସଂସାରରେ "ଅନ୍ଧ" ବୋଲି କହନ୍ତି ।—

ପ୍ରବୃତ୍ତି ହେଉ ବା ନିବୃତ୍ତି ହେଉ, ତାହାଦ୍ୱାରା ଲୋକସମାଜ ଉପଦିଷ୍ଟ ହୁଏ, ତାହାହିଁ ଶାସ୍ତ୍ରର ଗଣ୍ୟ । ଯେଉଁ ଉପଦେଶ ଦ୍ୱାରା ସମାଜ ଅସତ୍‌ପଥରେ ଚାଳିତ ହେବା ପାଇଁ ଉତ୍ତେଜନା ପାଏ, ତାହାକୁ ସଚ୍ଛାସ୍ତ୍ର ବା ସଦୁପଦେଶ ବୋଲି ମାନବ କଦାପି ଗ୍ରହଣ କରେ ନାହିଁ ।

ପ୍ରବୃତ୍ତିମାର୍ଗର ଉପଯୋଗି ବାଣିଜ୍ୟ ବ୍ୟବସାୟ ବୁଦ୍ଧି, ସେହି ବୁଦ୍ଧି କି ଲୋକେ ସାମାଜିକ ଉନ୍ନତି କଲେ ବିନିଯୋଗ କରି ନାନାବିଧ ଧନୋପାର୍ଜନର ପନ୍ଥା ଆବିଷ୍କାର କରିଦିଅନ୍ତି । ବହୁବିଧ ବ୍ୟବସାୟ ଜନିତ ଫଳ ସ୍ୱରୂପ ଧନପ୍ରାପ୍ତ ହୋଇ ସ୍ୱ ଦେଶର, ସ୍ୱ ଜାତିର ଓ ସ୍ୱ କୁଟୁମ୍ବର ସର୍ବସୁଖଦାତା ହୋଇ କଷ୍ଟଲବ୍ଧ ବା କଷ୍ଟାର୍ଜିତ ଧନର ସଦ୍‌ବ୍ୟବହାର କରେ । ସେଥିଲାଗି ଲୋକାକ୍ତିଅଛି ଯେ—"ଅରେ ଭାଇ ଅର୍ଜି ପାରିଲେ

ଗର୍ଜି ଖାଇ” ଯେ ଧନ ଅରଜ ନ ପାରିଲା, ସେ ସବୁବେଳେ ବୁଲ୍ ବୁଲ୍ କରି ଲୋକଙ୍କୁ ଗୁହାଁରି ବସିଥିବ । ସେହି ଅଳସୁଆ ବୁଦ୍ଧିହୀନ ଲୋକକୁ ସମାଜରେ କେହିହେଲେ ସୁଖ ପାଇବେ ନାହିଁ । ସାମାଜିକ ନିୟମ ଅନୁସାରେ—ଛୁଟ୍‌ଣ, ଅନ୍ଧ, ଛୋଟା, ସହାୟହୀନ, କରକଣ୍ଟ, ଲୋକମାନେ ଯାଚକ ବୃତ୍ତି କରି ଚଳନ୍ତି । ସେହିମାନଙ୍କୁ ଆଜଯାଏ ପ୍ରଶ୍ରୟ ଦେଇଥିଲା ସମାଜ । କିନ୍ତୁ ଆଜକାଲି ସୁସ୍ଥ, ସବଳ, କର୍ମଦକ୍ଷ, ବାକ୍‌ପଟୁ, ଅନାୟାସ ଭିକ୍ଷାର୍ଜିତ ଧନରେ ହଜାର ହଜାର ଜୀବିକା ନିର୍ବାହ କରନ୍ତି ।—

ପୂର୍ବକାଳରେ ଚତୁର୍ଥାଶ୍ରମଗତ ସର୍ବତ୍ୟାଗପୂତ, ଅଯାଚିତେ‌ାପସ୍ଥିତ ଅନ୍ନଭକ୍ଷକ ଦଣ୍ଡଧାରି "ସନ୍ନ୍ୟାସ"ମାନେ କେବଳ ଆଧ୍ୟାତ୍ମିକ ଭାବରେ ଭିକ୍ଷାଟନ କରୁଥିଲେ । ସମାଜ ସେହି ତ୍ୟାଗୀ ସନ୍ନ୍ୟାସମାନଙ୍କୁ ସାଦରେ ଭକ୍ତି ପ୍ରବଣ ହୃଦୟରେ ଗ୍ରହଣ କରୁଥିଲା ।

କିନ୍ତୁ ଆଜି କାଲି ଭାରତର ଏ ମୁଣ୍ଡରୁ ସେ ମୁଣ୍ଡଯାଏଁ ଦେଖିନେଲେ ତ୍ୟାଗପୂତତା ନଥାଇ ଲକ୍ଷ ଲକ୍ଷ, କୋଟି କୋଟି ଲୋକ ଭିକାରି ହୋଇ ଦୈନନ୍ଦିନ ବୁଲି ମାଗିବାଟ ଦେଖାଯାଏ । ତେବେ ଭାରତରେ ଦାରିଦ୍ର୍ୟର ଏ ବିକଟ ନୃତ୍ୟ କାହିଁକି ? ଭାରତ କେବେହେଲେ ଦାରିଦ୍ର୍ୟ ନର୍ତ୍ତନ ଦର୍ଶନେଚ୍ଛୁ ନୁହେ ପର ! କଳାହାଣ୍ଡିରେ କାହିଁକି ଏ ବିକଟନୃତ୍ୟ ଦେଖାଯାଉଚି ! ତାହା ଭଗବାନଙ୍କୁ ଗୋଚର ।

ମାଗି ବଞ୍ଚିବା ଅପେକ୍ଷା ହୀନ ବୃତ୍ତି ଅଉ କିଛି ନାହିଁ ବୋଲି କହିଲେ ଚଳେ । ତେବେ ଲୋକେ ଏତେ ପରିମାଣରେ ମାଗୁଛନ୍ତି

ବାର୍ଦ୍ଧକ୍ୟ ? ଏହାର ଏକମାତ୍ର କାରଣ, ଦାରିଦ୍ର୍ୟ । ସେଥିପାଇଁ କବି କହୁଛନ୍ତି—

"ସେଽପବେ ମାନମଖିଳଂ ଜ୍ୟୋସ୍ନେବ ତମଃ ଜ୍ୱରେବ ଲାବଣ୍ୟଂ ।
ହରିହର କଥେବ ଦୁରିତଂ ନିର୍ଦ୍ଧନତା ସର୍ବମପହରତି ।"

ଲୋକ, ଗଣିକର ଲୋକ ହୋଇ ରହୁଥିଲେ, ଅଞ୍ଚ ତାର ମାନ ସମ୍ମାନ କଷ୍ଟଦେଲେ ରହେନାହିଁ । ଯେପରି ବଳନ୍ତ ପକ୍ଷରେ ଚନ୍ଦ୍ର ଜ୍ୟୋତ୍ସ୍ନା ଯୋଗେ ତମିସ୍ରା ଦୂର ସ୍ଥାନକୁ ଅପସରି ଯାଏ, ନବଯୌବନ ସମ୍ପନ୍ନ, ସୁସ୍ଥ ସବଳ, ଲାବଣ୍ୟମୟ, ସୁନ୍ଦର ଯୁବକର ସକଳ ସୌନ୍ଦର୍ଯ୍ୟ ନାଶ କରିଦିଏ ଜ୍ୱର, ହରିହରଙ୍କ କଥା ଶ୍ରବଣ ମାତ୍ରେ ମାନବର ସକଳ ଦୁରିତ ବିନଷ୍ଟ ହୁଏ । କିନ୍ତୁ ଏକମାତ୍ର ଦାରିଦ୍ର୍ୟ ଦୋଷରେ ଦୁଷ୍ଟ ହୋଇଥିବା ଲୋକର ସର୍ବନାଶ ଘଟିଥାଏ । ସେଥିଲାଗି ଆଜିକାଲି ଭାରତୀୟ ସଙ୍ଗୀତର ଗୀତ୍ଯର ଦୃଷ୍ଟି ସେହି ଦାରିଦ୍ର୍ୟ ଉପରେ ପ୍ରଥମ ହୋଇ ପଡ଼ିଛି । ସେଥିରୁ ଜଣାଯାଏ ଯେ, ଅତି ନିକଟ ର ସମ୍ପର୍କ ହୋଇ ନୃତ୍ୟ ବନ୍ଦ କରିଦେଇ କେଉଁପଡେ ଗୁହାଯିବ ।

ଏ ଜଗତରେ କାହାରି ସ୍ଥିରତା ରହୁନାହିଁ, ଅଜ ଶର ସ୍ଥିର ବୋଲି କହିବାଠା ଦୁଃସାହସିକତା ଛଡ଼ା ଆଉ କ'ଣ ହୋଇପାରେ ? । ଅବସ୍ଥାଚକ୍ରଟିର ଗୋଟିଏ ଘେର ବା ଅରେମାନ ଘୂର୍ଣ୍ଣନ ନିୟତ ନିର୍ଦ୍ଦିଷ୍ଟ । ଜାଗତିକ ପ୍ରାଣୀ କେତେ ଚତୁର, ଜ୍ଞାନୀ, ବୈଜ୍ଞାନିକ ହୋଇଥିଲେ ସୁଦ୍ଧା ନିୟତିର ନିର୍ଦ୍ଦେଶକୁ କଣ୍ଠିତମାତ୍ରାରେ ହେଲେ ମଧ୍ୟ ବଦଳାଇ ପାରିବାର କ୍ଷମତା ତାର ନାହିଁ । ଦୁଃସାହସିକ ମାନବ, ବୃଥା ଅସ୍ଫାଳନ ମାତ୍ର ଦେଖାଇଥାଏ ।

ମାନବ ! ସାଂସାରିକ କାର୍ଯ୍ୟକଳାପ ଅବସ୍ଥୋଚିତ ଯଥାଯଥ ଭାବରେ ଚଳାଇଲାବେଳେ ଅବକାଶର ଅପେକ୍ଷା ନରଖି, ମନକୁ

ଟିକିଏ ଧାର୍ମିକତା ଅଳ୍ପେ ରଖିବା ଉଚିତ ହେବ । ଏକଥା ମଧ୍ୟ ବୁଝିବାକୁ ହେବ ଯେ, ତୁମ ପାଇଁ ନିଯୁକ୍ତ ନିଦେଶର ଦ୍ୱିତୀୟ ସଂସ୍କାର କଦାପି ହେବନାହିଁ । ଅଧିକରେ ନିଯୁକ୍ତ ଏହା ଜାଣି ପାରିଲେ ବିକଟ ଅଟ୍ଟହାସ କରି ବସିବ । ମାନବର ସକଳପ୍ରକାର ଦକ୍ଷତା ନିଯୁକ୍ତ ନିକଟରେ ପରାଭବ ପାଇଯିବ ।

---

# ପରିଶିଷ୍ଟ

ଏ ପବିତ୍ର ଭାରତ ଭୂମିରେ ଧନ, ଜ୍ଞାନ'ର ଅଭାବ ପରିଲକ୍ଷିତ ହୁଏନାହିଁ, କାହିଁକି ବା ଏଥିରେ ଦାରିଦ୍ର୍ୟ ଘୋଟି ରହୁଛି ? ଏହାହିଁ ବିସ୍ମୟ ବିଷୟ । ଏହାର କାରଣ ସ୍ୱରୂପ ଦେଖାଯାଏ ଯେ, ବୈଦେଶିକ ରୀତି, ନୀତି, ଆଚରଣ, ଶିକ୍ଷା, ଭାଷା, ଆଡ଼ମ୍ବରପ୍ରିୟତା, ଏବଂ ବିଳାସିତାର ଅନୁକରଣ ଯୋଗୁଁ ଏ ଦୁରବସ୍ଥା ବଳବତୀ ହୋଇ, ଭାରତୀୟଙ୍କୁ ବଳପୂର୍ବକ ଆକ୍ରମଣ କରି ରଖିଛି । ସୁତରାଂ ଭାରତୀୟମାନେ ବିଳାସିତାକୁ ସ୍ନେହଭରେ ଛାଡ଼ି ନପାରି ବିଦେଶ ମୁହାଁ ହୋଇ, ସ୍ୱଦେଶୀୟ ସକଳ ପଦାର୍ଥ ବା ଖାଦ୍ୟ ଜିନିଷ ଦେଇ ତା ବଦଳରେ ବୈଳାସିକ ପଦାର୍ଥ ଆଣୁଛନ୍ତି । ବୈଳାସିକ ପଦାର୍ଥ ତ ଖାଦ୍ୟ ପଦାର୍ଥ ନୁହେଁ, ତାହା ଅଙ୍ଗଭୂଷଣ ବା ଯାନ୍ତ୍ରିକ ହୋଇଥାଏ । ତାହା ସବୁ କ୍ଷଣିକ ଆନନ୍ଦ ବା ତୃପ୍ତିପ୍ରଦ । କିନ୍ତୁ ତଦ୍ଦ୍ୱାରା ଶରୀର, ସୁସ୍ଥ, ସବଳ ସୁଦୃଢ଼ ହୋଇ ପାରିବ ନାହିଁ । ହେବ, ଉତ୍ତମ ଖାଦ୍ୟ ଗ୍ରହଣରେ । କିନ୍ତୁ ଖାଦ୍ୟ ଯାଉଛି ବିଦେଶକୁ କେବଳ ଶୁଷ୍କ ଗୃହଚାକ୍ୟ ମୋହରେ । ଯେବା ବା ସେପରି ଚକଚକିଆ ମନୋମୋହନକାରୀ ପଦାର୍ଥ ଗୁଡ଼ିକ ନିର୍ମାଣ କରୁଛି, ତାହା କି ଉଦ୍ଦେଶ୍ୟରେ ? ତାରି ବିନିମୟକରି ଇତର ଦେଶରୁ ପ୍ରଚୁର ଖାଦ୍ୟ ନେବା ଅଭିପ୍ରାୟରେ । ଯେଉଁ

ଯାନ୍ତ୍ରିକ ପଦାର୍ଥ ଗୁଡ଼ିକ ଆମ ଦେଶରେ ଅଛି, ତାହା ସବୁ ବିଦେଶାଗତ, ଅଛି, ସେଥିରୁ ଗୋଟିଏ ହେଲେ ଯନ୍ତ୍ର ଦଶ ସନ୍ଧ୍ୟାଏଁ ରୋଗ ନ୍ୟୂନ୍ୟ ଶରୀରେ ପରିଚାଳିତ ହୁଏ କି ? ଗୋଟିଏ ଯୋଡ଼ିଏ ବର୍ଷ ଯନ୍ତ୍ର ସମାନ ଭାବରେ ଚାଳିତହେଲେ ବଡ଼ କଥା । ତାପରେ ଯନ୍ତ୍ର ଗୁଡ଼ିକର ଦେହ ଛିନ୍ନହେଲେ, ତଦ୍ୱାରା ଚିକିତ୍ସାଳୟ (ଗ୍ୟାରେଜି)ରେ କଟାକଟି, ଅସ୍ତ୍ରୋପଚାର କରାଯାଏ । ଅସ୍ତ୍ରୋପଚାର ଯୋଗେ କେଉଁ ଯନ୍ତ୍ରଟିର ଆଂଶିକ ଆରୋଗ୍ୟହୁଏ, କେଉଁଟିର ଅବା ଅସ୍ତ୍ର ଚିକିତ୍ସାରେ ପ୍ରାଣ ଯାଏ । କିନ୍ତୁ ଚିକିତ୍ସକର ସେଥିରେ କାଣ୍ଡହେଲେ ଦୋଷ ବା କ୍ଷତି ନଥାଏ । ଯେଉଁ ନଗର ବା ପୁରକୁ ଯାଇ ଦେଖିଲେ, ସବୁଠାରେ ବିଦେଶାଗତ ଯନ୍ତ୍ରମାନଙ୍କର ଚିକିତ୍ସାମନ୍ଦିର (ଗ୍ୟାରେଜ) ବରାବର ପ୍ରତିଷ୍ଠିତ ହୋଇ ରହିଛି । ରୋଗଯୁକ୍ତ ବା ମର୍ଦ୍ଦାଭ୍ରଣପୀଡ଼ିତ ଯନ୍ତ୍ରମାନେ ଚିକିତ୍ସାଳୟର ପୁରଦ୍ୱାର ନିକଟରେ ସଦା ଘୋର ଆର୍ତ୍ତନାଦ କରି ପ୍ରତିମୂହୂର୍ତ୍ତରେ ଅସ୍ଥି ଚୂର୍ଣ୍ଣ ହେଉଛନ୍ତି । ସବୁ ଗୁଡ଼ାକ ଯନ୍ତ୍ର ଚିକିତ୍ସକ ସମାନ ଭାବରେ ଅସ୍ତ୍ର ଚିକିତ୍ସା କରିପାରିବେ ବୋଲି, କିଏ ବା କହି ପାରିବ ? ପୁଣି ଏଥିରେ ହସ୍ତ ଗୁଣ ମଧ୍ୟ ବିଚାର କରାଯାଏ; କେଉଁ ଚିକିତ୍ସକ ବିଷହସ୍ତା କିଏ ବା ଅମୃତହସ୍ତା ହୋଇଥାନ୍ତି । ଯଦି ରୋଗୀ ଯନ୍ତ୍ର, ବିଷହସ୍ତାର ନିକଟରେ ଚିକିତ୍ସିତ ହୁଏ, ତେବେ ତାର ସୌଭାଗ୍ୟଥିଲେ ସ୍ୱାସ୍ଥ୍ୟ ଲଭିଯାଏ, କିମ୍ବା ଅଦୃଷ୍ଟ ମନ୍ଦ ହୋଇଥିଲେ, ଯନ୍ତ୍ରଟି ସେହି ଚିକିତ୍ସାଳୟରେହିଁ ପ୍ରାଣ ହରାଇଦିଏ, ଚିକିତ୍ସକ ସେ ଯାନ୍ତ୍ରିକ ମୃତଦେହକୁ ଅଉ କୁଆଡ଼େ ଫିଙ୍ଗି ନଦେଇ, ଯନ୍ତ୍ରର ହାଡ଼ ବା କଙ୍କାଳଗୁଡ଼ାକୁ ଚିକିତ୍ସାଳୟର ଏକ କୋଣରେ ଗଦେଇ ଦେଇଥାଏ, ସମୟରେ ଅପର ଯନ୍ତ୍ରରେ ଏହାର ହାଡ଼ ଯୋଖିଦେଲେ, ସେ ଯନ୍ତ୍ର ରୋଗୀ ଆରୋଗ୍ୟ ପାଇପିବ, ଏଇ ଅଭିପ୍ରାୟରେ ।

ସେହି ଜନ୍ତୁ ଶୃଙ୍ଖଳର ଭାଗ୍ୟ ଯାହା, ଶ୍ରେଷ୍ଠପ୍ରାଣୀ ମାନବର ଭାଗ୍ୟ ସେପରି ନୁହେଁ ବୋଲି କିଏ ବା କହିବ ? । ଜଡ଼ ବସ୍ତୁ ଏବଂ ଚେତନ ପଦାର୍ଥ ପାଇଁ ନିୟତି ସମାନ ଭାବରେ ଗୋଟିଏ ନିୟମ ପ୍ରଣୟନ କରିଦେଇଛି । ସେ ନିୟମ ଅଲଙ୍ଘନୀୟ । ସ୍ୱୟଂ ପରମାତ୍ମା ମଧ୍ୟ ସେ ନିୟମରୁ ବହିର୍ଭୂତ ହୋଇ ପାରିବେ ନାହିଁ, ମାନବର ଅବା ସେଥିରେ କି କର୍ତ୍ତବ୍ୟ ରହିପାରେ ! ।

ସୁକୋମଳ ବାଲ୍ୟାବସ୍ଥାଟି ଅତି କୌତୁକରେ ପାଞ୍ଚୋଟି ବର୍ଷ ଭିତରେ କଟିଯାଏ । ଆହାର, ନିଦ୍ରା ଛଡ଼ା ଅନ୍ୟ ଜାଗତିକ ବିଷୟରେ ବାଳକର ମନ ଯୋଗଦେଇନାହିଁ । କେତେକ ଖେଳନା ବସ୍ତୁ ଦେଖିଲେ ଆଗ୍ରହ ପ୍ରକାଶକରି ପିତା ମାତା ପାଖରେ ସମୟେ ସମୟେ ହଠ କରିଥାଏ ।

କୈଶୋର ସମୟ ଆସି ଉପଗତ ହୋଇଗଲେ, ସମାଜଗତ ଅନ୍ୟ ବାଳକଙ୍କମେଳରେ ସମ୍ପୃକ୍ତ ହୋଇ, ବିଭିନ୍ନ ପ୍ରକାର କୌତୁକାବହ କ୍ରୀଡ଼ାରେ ମନୋନିବେଶ କରି, ସ୍ୱମତିର ତାରଲ୍ୟ ପ୍ରତି ମୁହୂର୍ତ୍ତରେ ଦେଖାଇଦିଏ । ବାଳକର ବୁଦ୍ଧି ତାରଲ୍ୟରେ ଜନକ ଜନନୀ ବିଚଳିତ ହୋଇ, ବିଦ୍ୟାରମ୍ଭ କରାଇଦେଇ ବାଳକକୁ ଶିକ୍ଷକ ଅଧୀନସ୍ଥ କରାଇ ଦିଅନ୍ତି । ବାଳକର ସେତେବେଳେ କେବଳ ଖେଳକୁଦରେ ମନଟି ନିମଜ୍ଜିତ ଥାଏ, ସୁତରାଂ ଶିକ୍ଷକଙ୍କ ଅଧୀନତା ବଡ଼ କଷ୍ଟଦାୟକ ହୁଏ, ତା ପକ୍ଷରେ । କ'ଣ କରିବ, ଅଗତ୍ୟା ବାଧ୍ୟ ହୋଇ, କାନ୍ଦ କୁନ୍ଥେଇ ଜନକ ବା ଜନନୀଙ୍କଠାରୁ ଉତ୍କୋଚ ଗ୍ରହଣ ପୂର୍ବକ ପ୍ରତିଦିନ ପାଠଶାଳରେ ପ୍ରବିଷ୍ଟ ହୁଏ । ଏପରି କେତୋଟି ବର୍ଷପରେ ଅଧ୍ୟୟନରେ ଅଭ୍ୟସ୍ତ ହୁଏ । ଏହି ସମୟଠାରୁ ବିଭିନ୍ନଶ୍ରେଣୀୟ ବାଳକମାନେ ଜନକଙ୍କ ନିର୍ଦ୍ଦେଶକ୍ରମେ ଯେ ଯାହାର ବୃତ୍ତି ଅଭ୍ୟାସରେ ଲାଗି ପଡ଼ନ୍ତି ।

ଅତଏବ ସାମାଜିକ ବାଳକମାନେ ନିଜ ନିଜ ବୃତ୍ତିରେ ଦକ୍ଷତାଲାଭ, ସମାଜର ସର୍ବବିଧ କଲ୍ୟାଣ କରିବା ପାଇଁ ଆତ୍ମୋତ୍ସର୍ଗ କରି ବସନ୍ତି । ପୌଗଣ୍ଡ ଆସି ଶନୈଃ ଶନୈଃ ଦେଖାଯାଏ । ଏତେବେଳେ ସନ୍ତାନଗଣର ମନ ଟିକିଏ ବିଳାସିତା ଆଡ଼କୁ ଆଉଜି ପଡ଼େ, ଏବଂ ପରିଷ୍କାର ପରିଚ୍ଛଦ ଓ ଶରୀର ପ୍ରତି ଦୃଷ୍ଟି ଆକୃଷ୍ଟ ହୁଏ । ଅନ୍ୟାନ୍ୟ ସଙ୍ଗୀମାନଙ୍କର ବେଶଭୂଷା, ଚାଲି, ଚଳଣି, କଥାବାର୍ତ୍ତା, ଖାଦ୍ୟପେୟ, ବ୍ୟବହାରରେ ମୁଗ୍ଧ ହୋଇ, ସେହିପରି ନିଜକୁ ସଜାଇବାକୁ ଉଦ୍ୟତ ହୁଏ । ଏଥିରେ ଜନକ ଜନନୀ ଅପେକ୍ଷାକୃତ ଟିକିଏ ଗର୍ବାନ୍ତ ହୁଅନ୍ତି । ତଥାପି ନିର୍ବିକଳ୍ପ ଚିତ୍ତରେ ଶିକ୍ଷାର ଦାୟିତ୍ୱଭାର ନିଜ ମସ୍ତକରେ ବହନ କରି ସୁଖରେ ବା କଷ୍ଟରେ ତାହା ଚଳାଇ ନିଅନ୍ତି । କାଳେ ପିଲାର ମନରେ ବିରକ୍ତି ଜନ୍ମିଲେ ପଢ଼ାରୁ କ୍ଷାନ୍ତ ହୋଇଯିବ, ଏହି ଆଶଙ୍କାରେ ସେ ଯେତେବେଳେ ଯାହା ଲୋଡ଼ିବ, ତାହା ପୂରଣ କରିଦିଅନ୍ତି । ଏପରି ପୌଗଣ୍ଡ ମଧ୍ୟ ଅତୀତ ଗର୍ଭରେ ଲୀନ ହେବାକୁ ଆରମ୍ଭ କରେ ।

ଉଦ୍ଦାମ ଯୌବନ ଆସୁ ଆସୁ ମନୁଷ୍ୟର ଅହଙ୍କୃତି ଆସି ହୃଦୟରେ ବସା ବାନ୍ଧି ରହେ । ପ୍ରତ୍ୟେକ ପଦାର୍ଥ ଭୋଗ କରିବାରେ ରତି ବା ପ୍ରୀତି ଜନ୍ମିଯାଏ । ଯଦି ତାହାର ପୂରଣ ହେଲାତ ମନରେ କ୍ଷଣିକ ପାଇଁ ତୃପ୍ତି ନୋହେଲେ ସଙ୍ଗେ ସଙ୍ଗେ ଲୁଚିକରି ସେ କ୍ରୋଧ ଆସେ କେଉଁଠୁଁ, ମୁହୂର୍ତ୍ତିକେ ଝପଟି ଆସି ଦେଖାଦିଏ । କ୍ରୋଧ ଆସିଲାବେଳେ କେତେବେଳେ ନିସ୍ତ୍ରୀକଭ ଅସେନାହିଁ, ସଙ୍ଗରେ ତାର ସ୍ତ୍ରୀ ହିଂସା ମଧ୍ୟ ଆସିଥାଏ । ଏ ଅହେ ଯୌବନର ଉଦ୍ଦୀପନା, ପୁଣି ପ୍ରଧାନ ପୁଷ୍ଟପୋଷକ ସର୍ବଗ୍ରାସୀ କ୍ରୋଧ, ଏଥିରେ କେଉଁ ପୁରୁଷର ଆଉ ସ୍ଥାନ ପାଇ ରହିପାରିବ ? । ସୁତରାଂ

ଜ୍ଞାନେନ୍ଦ୍ରିୟ ବା କର୍ମେନ୍ଦ୍ରିୟ ଯେ ହୁଅନ୍ତୁ, ଯୌବନର କଶାଘାତରେ ଅତ୍ୟନ୍ତ ପୀଡ଼ିତ ହୋଇ ନିଜ ନିଜ ପ୍ରବୃତ୍ତିରେ ଟିକିଏ ମାତ୍ର ଅବହେଳା ନକରି ମାତିଯାନ୍ତି । କିନ୍ତୁ ବିବେକ ସେତେବେଳେ ନିରୁପାୟ ହୋଇ ହୃଦୟର ନିଭୃତ କୋଣରେ ମୌନ ଅବଲମ୍ବନ କରି ଲୁଚି ବସିଥାଏ । ଯୌବନର ଏ ପ୍ରଖର ପ୍ରବାହରେ ବିବେକ ସ୍ଥଳ କୂଳ ପାଇବାର ବାଟ ଦେଖି ନପାରି, ଏକବାରେକେ ଚେଷ୍ଟା ରହିତ ହୋଇଯାଏ । ଯୌବନର ଗୋଟିଏ ଗୁଣ ଏପରି ଅଛି ଯେ, ସେ କେବେହେଲେ ବିବେକର ପରାମର୍ଶ ଲୋଡ଼ିବନାହିଁ । ଅନାହୂତ ହୋଇ ଯଦି ବିବେକ ଯୌବନ ନିକଟରେ ଉପଗତ ହୁଏ, ତେବେ ତାହାଠାରୁ ଘୋରତର ଅପମାନ ଲଭି ସେ ସ୍ଥାନରୁ କ୍ଷଣକେ ଅପସରିଯାଏ । ବିବେକର ଅନୁପସ୍ଥିତି ଯୋଗେ ପରମ ସ୍ୱଚ୍ଛନ୍ଦ ସୁଯୋଗ ପାଇ, ଯୌବନ ନିଜର ଔଦ୍ଧତ୍ୟ ପ୍ରକାଶ କରି ଇନ୍ଦ୍ରିୟମାନଙ୍କୁ ସ୍ୱାର୍ଥ ସିଦ୍ଧିଲକ୍ଷରେ ଏପରି କଠିନତର ଆଦେଶ ପ୍ରଦାନକରେ ଯେ, ସେମାନେ ଅବିଳମ୍ବେ ଯେ ଯାହାର କାର୍ଯ୍ୟରେ ତତ୍ପର ହୋଇ ଲାଗିଯାନ୍ତି ।

ପ୍ରାଣି ସୃଷ୍ଟିରେ ଦେଖିବାକୁ ଗଲେ—ଇନ୍ଦ୍ରିୟଗଣର ବଶ-ବର୍ତ୍ତିତା ସ୍ୱୀକାର କରିଥିବା ଲୋକର ସମାଜରେ ବା ଦେଶରେ ବା ବେଶରେ କେବେହେଲେ ଉପଯୁକ୍ତ ପ୍ରଶଂସାର ପାତ୍ର ହୋଇ ପାରିନାହିଁ ବା ପାରିବନାହିଁ । କାରଣ, ଜଡ଼ଶକ୍ତି ସମ୍ପନ୍ନ ଇନ୍ଦ୍ରିୟଗଣ । ମାନସିକ ଉନ୍ମାଦନା ଯୋଗେ ସେମାନେ ପରିଚାଳିତ । ସୁତରାଂ କୌଣସି ସମୟରେହେଲେ ଇନ୍ଦ୍ରିୟଗଣର ସ୍ୱାତନ୍ତ୍ର୍ୟ ନାହିଁ । ଯିଏ ବା ବିଶ୍ୱ ଜଗତରେ ଚିରପରାଧୀନ ସ୍ୱତଃ ଶକ୍ତି ରହିତ, ସେ ଅବା ବିଶ୍ୱଦରବାରରେ ପ୍ରଶଂସାର ଭାଜନ ହେବ କିପରି ? ଅତଏବ ଜଣାଯାଏ ଯେ, ଶରୀର ଇନ୍ଦ୍ରିୟଗଣର

ଏକମାତ୍ର ନିୟନ୍ତା ହେଉଛି ମନ । ପ୍ରାଣିର ଉତ୍କର୍ଷ, ଅପକର୍ଷ ବା ନିଧନ ଯାହା କିଛି କହାଯାଏ, କେବଳ ଅସ୍ଥିର ମନଃଯୋଗରୁ ତାହା ସବୁ ଘଟିଥାଏ । ଅତଏବ ଗୀତାରେ କହାଯାଇଛି ଯେ, "ମନଏବ ମନୁଷ୍ୟାଣାଂ କାରଣଂ ବନ୍ଧମୋକ୍ଷୟୋଃ" ସଂସାରର ଜଞ୍ଜାଳଜାଲରେ ନିବଦ୍ଧହେବା ଅଥବା ତହିଁରୁ ଅଲଗା ହୋଇ ମୁକ୍ତିପଥ ଅନୁସରଣ କରିବା ଏ ଦୁଇଟି କାର୍ଯ୍ୟର କାରଣୀଭୂତ ଭଗବାନ୍ ଶ୍ରୀକୃଷ୍ଣ କହୁଚନ୍ତି ।

ଅନ୍ତର୍ଯ୍ୟାମୀ ଶ୍ରୀକୃଷ୍ଣ ଆମମାନଙ୍କ ଉନ୍ନତ ଯୌବନକୁ ପ୍ରାଧାନ୍ୟ-ଦେବା ଉଦ୍ଦେଶ୍ୟରେ ସମ୍ଭବତଃ କହୁଥିବେ ଯେ, ମନକୁ ସଂଯତ କରିପାରିଲେ ଲୋକ ସର୍ବୋପକାରୀ ହୋଇପାରେ, ଅନ୍ୟଥା ଅସମ୍ଭବ । କିନ୍ତୁ ମନକୁ ସଂଯତ କରି ରଖିବା ସହଜ ବ୍ୟାପର ନୁହେଁ । ଯେପରି ପ୍ରଭଞ୍ଜନ ନଈର ମହାଗ୍ରଗତି ଦେଖାଇଲାବେଳେ ମାନବୀୟ ସକଳ ପ୍ରକାର ପ୍ରତିରୋଧ ପରାଭବ ପାଇଯାଏ, ସେପରି, ଯୌବନୋନ୍ମାଦିତ ମନକୁ ସଂଯତଭାବେ ରୁଦ୍ଧକରି ରଖିବା ଅତ୍ୟନ୍ତ କଠିନ ହୋଇପଡ଼େ । ଅତଏବ ବିବେକୀ, ଜ୍ଞାନୀଜନମାନଙ୍କର ସତ୍ପରାମର୍ଶ, ସଦୁପଦେଶ, ସତ୍ବିବେଚନା ଲାଭ ଆଶାରେ ଜନକ ଜନନୀ ସ୍ୱସନ୍ତାନଗଣଙ୍କୁ ସଦ୍‌ଗୁରୁ ନିକଟରେ ରଖାଇ, ଅସନ୍ତୋଷ-ଲାଭ କରନ୍ତି । ଯୁଗଭେଦରେ ତାହାର ବ୍ୟତିକ୍ରମ ଘଟିବାରୁ ସଂସାରରେ କି ନ ଘଟୁଛି !! "କିଂ ଜୀବନ୍ତୈର୍ନ ଷଢେ" ଗୀତାରେ ଥିବା ଲୋକ ସଂସାରରେ କ'ଣ ବା ନଦେଖେ ? ଅଭିଲାଷପୂର୍ଣ୍ଣ ମାନସକୁ କେବଳ ନିଷେଧ କରାଯାଇ ଥାଏ ସିନା, ଏହାଦ୍ୱାରା ଯୌବନର ନିନ୍ଦା କରାଯାଏ ନାହିଁ । ଅଗରୁ କହା ଯାଇଛି ଯେ, "ସର୍ବମତ୍ୟନ୍ତ ଗର୍ହିତଂ" ପ୍ରତ୍ୟେକ କାର୍ଯ୍ୟରେ ଆତିଶଯ୍ୟରହିଁ ନିରୋଧ କରି ସମୁଚିତ ମନେକରି ଏହି ବ୍ୟବସ୍ଥା କରାଯାଏ ।

ଜଗତରେ ଗୋଟାଏ ପ୍ରକାର ମନୋବୃତ୍ତି ନାହିଁ, ଭେଉଲ ଶ୍ରେଣିର ଲୋକ ଏଥିରୁ ନାନା ପ୍ରକାର ଭାବ ଗ୍ରହଣ କରିପାରନ୍ତି । ସେଥିଲାଗି ଚିର ପ୍ରସିଦ୍ଧ ମହାପୁରୁଷ ବାକ୍ୟର ଅନ୍ୟଥା ଅର୍ଥ ହୋଇପାରେ କି ? ।

ଚକ୍ରର ଗତି ବୃତ୍ତ ଘୂର୍ଣ୍ଣନରେ ପ୍ରସିଦ୍ଧ, କିନ୍ତୁ ତାହା ଅନନ୍ତ ଘୂର୍ଣ୍ଣନରେ ଗତିଶୀଳ ହୁଏ । ବର୍ତ୍ତମାନ ଏ ଯେ, "ଅବସ୍ଥାଚକ୍ର" ବୋଲି ଉଲ୍ଲିଖିତ ହେଲା, ଏ ଗୋଟିଏ ବିଲକ୍ଷଣ ଚକ୍ର, ଏହାର ଏକବାର ଘୂର୍ଣ୍ଣନହିଁ ପ୍ରସିଦ୍ଧ । ଏହାର ଗତି ସେତିକରେ ସୀମିତ । ନିୟତି କେବଳ ଅବସ୍ଥାଚକ୍ର ନିୟନ୍ତ୍ରଣ କାର୍ଯ୍ୟରେ ନିଯୁକ୍ତ ରହିଅଛି । ସେ ଅନ୍ୟ ମାନଙ୍କ ନିୟନ୍ତ୍ରଣାଧିକାରକୁ କଦାପି ସ୍ୱୀକାର କରିବ ନାହିଁ । ମାନବର ଅବା ସେପରି ଶକ୍ତି କାହିଁ ଅଛି ଯେ, ସେ ନିୟତିକି ପରାସ୍ତ କରିଦେଇ, ତାର ଅଧିକାରରେ ନିଜର ହସ୍ତକ୍ଷେପ କରି ବସିବ ? ଏବେ ଅବସ୍ଥାଚକ୍ରର ସ୍ୱରଗୋଟି ଅର ବୁଲିଗଲାଣି, ଅବଶିଷ୍ଟ ଅନ୍ୟ ଯୋଡ଼ିଏ ମାତ୍ର ଅର ବୁଲିବାକୁ ବାକି ରହିଛି ।

ପ୍ରୌଢ଼ ଅବସ୍ଥାର ଆଦେଶରେ ମନ ସେତେତ୍ତୂର ଗୃହଶିଳ୍ପ ନ ଦେଖାଇ ପୂର୍ବାପେକ୍ଷା ଟିକିଏ ଔଚିତ୍ୟ ବିବେଚନା ଆଡ଼କୁ ଢଳେ । ସେଥିରେ ଯଦି ସ୍ୱାର୍ଥ ବା ମଦ ସମ୍ପର୍କରେ ସମ୍ପୃକ୍ତ ହୁଏ, ତେବେ ଅଉ ବିବେଚନା ଆଡ଼କୁ ଢଳିପାରେ ନାହିଁ । ପୁରାଣାଦି ଶାସ୍ତ୍ରୀୟଜ୍ଞାନ ବିଚକ୍ଷଣଙ୍କ ସଙ୍ଗରେ ରହିଲେ ବିବେଚନାର ବଳ ଟିକିଏ ଅଧିକ ହୁଏ । ବିବେଚନା ଯେତେବେଳେ ମାନସରାଜ୍ୟରେ ବଳବତୀ ହୁଏ, ସେ ଅଉ ଯୌବନୋନ୍ମାଦନାକୁ ଡରିବ କି ? । କ୍ରମେ କ୍ରମେ ସେ ରାଜ୍ୟାଧିକାର କରିବାକୁ ଆରମ୍ଭ କରିଦିଏ । ସାଂସାରିକ ଗୃହକର୍ମଜାଲରୁ ଅନ୍ତର କରିଦେଇ ମୋର ସାମ୍ରାଜ୍ୟ ପ୍ରତିଷ୍ଠା ନିରଙ୍କୁଶ ଭାବେ ରହିବ ବୋଲି ମନରେ ଚିନ୍ତାକରି,

ବାନପ୍ରସ୍ଥର ବ୍ୟବସ୍ଥା କରିଦିଏ । ବାନପ୍ରସ୍ଥରେ ଆଉ ଇଚ୍ଛାଲାଳ ରହେ ନାହିଁ, ରହେ କେବଳ ତତ୍ତ୍ୱଜିଜ୍ଞାସା, ସକଳ ଜାଗତିକ ତତ୍ତ୍ୱ ଅବଗତ ହୋଇ, ବିବେକର ଆଦେଶରେ ତଦୀୟ ସାମ୍ରାଜ୍ୟ ପ୍ରତିଷ୍ଠାରେ ସହାୟକ ହୋଇ କେବଳ ପ୍ରଚ୍ଛନ୍ନଭାବେ ସର୍ବତ୍ର ବୁଲି ବୁଲି କାର୍ଯ୍ୟର ସମାଧାନ କରେ । ଯୌବନ ମଧ୍ୟ ନିଜର ଉଚ୍ଛୃଙ୍ଖଳା ଯୋଗେ ପ୍ରଥମରୁ ବିବେକର ଉପଦେଶମାନ ନ ଥିବାରୁ ଲଜ୍ଜିତ ହୋଇ ନତବଦନରେ ତାହା ଗ୍ରହଣ କରେ, ଏବଂ ଯୋଡ଼ହସ୍ତ ହୋଇ ସ୍ୱୀକାର କରେ ଯେ, ପୂର୍ବାଚରିତ ଜନିତ ମୋର ସକଳ ଅପରାଧ କ୍ଷମାକର । ତ୍ୱଦୀୟ ଉପଦେଶାତ୍ମକ ବିଧାନରେ ମୁଁ ବହୁତ ବାଧା ଘଟାଇଛି, ଏଣିକି ତୁମର ଆଦେଶମାନ ଯଥା ନିୟମରେ ଚଳିବି । ଏଥିରେ ଆଉ ଦ୍ୱିଧା ବୋଧ କରିବାର କୌଣସି କାରଣ ନାହିଁ ବୋଲି ପ୍ରମାଣ ବଚନ ଦେଉଛି । ବିବେକ ନିଜର ବିବେଚନା ବଳରେ ସତ୍ପଥ ଏବଂ ଅସତ୍ପଥ ନିରୂପଣ କରିପାରେ; ସୁତରାଂ କାହିଁକି ବା ଜାଣି ଶୁଣି କୁପଥଗାମୀ ହେବ ? ନିଜେ ସତ୍ପଥଗାମୀ ହେଲେ ସିନା ଦୃଷ୍ଟାନ୍ତ ସ୍ୱରୂପ ରହି, ଇତର ପ୍ରାଣୀଙ୍କି ସତ୍ପଥକୁ ଆଣିପାରିବ, ନିଜେ ଯଦି ଅସଦାଚାର ହୋଇ ଉପଦେଷ୍ଟା ସାଜି ହେବ, ତାର କଥା କିଏ ବା କାହିଁକି ତେବେ ଶୁଣିବ ? । ଅତଏବ ସବୁବେଳେ ବିବେକ ସତ୍ପଥରେ ଚାଳିତ ହୋଇ ଲୋକସାଧାରଣଙ୍କୁ ସଦୁପଦେଶ ଦିଏ । ଲୋକେ ଉପଦିଷ୍ଟ ହୋଇ ପ୍ରତ୍ୟେକ ଅବସ୍ଥାରେ ସଂଯମକୁ ଆଦର ସହକାରେ ଲୋଡ଼ି ବସନ୍ତି । ତଦ୍ୱାରା ଭୁବନରେ ସନ୍ତୋଷ ଘର କରି ରହେ । ରୋଗମାନେ ମଧ୍ୟ ପ୍ରାଣୀ ଆକ୍ରମଣ ଭାବ ସଂଯତ କରିଦେଇ ଅପସରଣ କରନ୍ତି । ଅଭାବବୋଧ ଆଉ ଲୋକ ହୃଦୟରେ ରହି ନପାରି ନିୟତିଙ୍କ ନିକଟକୁ ଗତି ରଚନା କରେ । ଏହିପରି

ପ୍ରୌଢ଼ାବସ୍ଥାରେ ବିବେକ ସବଳ ହୋଇ ଇନ୍ଦ୍ରିୟଗଣଙ୍କ ଅବାରିତ ପ୍ରବୃତ୍ତିମାନର ଉପଶମ ଘଟାଇ ନିଜର ପ୍ରତିଷ୍ଠା ବଢ଼ାଇବାରେ ଅବିଶ୍ରାନ୍ତ ପରିଶ୍ରମ କରି ଲାଗିପଡ଼େ । କ୍ରମେ କ୍ରମେ ସେ ଅବସ୍ଥାଟିର ମଧ୍ୟ ଅନ୍ତିମ ସମୟ ଆସିଯାଏ, କାରଣ, ଗୋଟି ଗୋଟି ହୋଇ ଯେତେବେଳେ ଚାରୋଟି ଅବସ୍ଥା ନିଜ ନିଜର ସ୍ୱଭାବ ଦେଖାଇ ଚାଲିଗଲେଣି, ଏ ପ୍ରୌଢ଼ ଅବା ଚିରସ୍ଥିର ହୋଇ ରହିବ ବୋଲି କାହିଁକି ଭାବିବ ? । ବିବେକ ଏପରି ଦୁର୍ଭାବନାରେ ପ୍ରୌଢ଼କୁ କାହିଁକି ଉଦ୍‌ବୁଦ୍ଧ କରିବ ? । ସୁତରାଂ ପ୍ରୌଢ଼ ଜାଣିପାରେ ଯେ, ନିଜର ମଧ୍ୟ ସେହି ପୂର୍ବପ୍ରଚଳିତ ଅବସ୍ଥାମାନଙ୍କର ଗତି ସୁନିଶ୍ଚିତ । ଆଶ୍ରମ ବ୍ୟବସ୍ଥାରେ ଲୋକ ବଣ୍ଟାହେଲେ ମଧ୍ୟ ଅବସ୍ଥାଚକ୍ରରୁ ବହିର୍ଭୂତ ନୁହେଁ । ଯେଉଁଠି ରହିଲେ ମଧ୍ୟ ଅବସ୍ଥା ସବୁରି ସଙ୍ଗେ ଯୋଡ଼ାଇଥିବ । ଅବସ୍ଥା ଗୁଡ଼ିକର ଅବା ବଳଧୈର୍ଯ୍ୟ କେତେ ଯେ, ସେମାନେ ନିୟୁତର କଠିନତର ଆଦେଶ ଲଙ୍ଘନ କରିଦେବେ ? ଅତଏବ ଯଥା ନିର୍ଦ୍ଦିଷ୍ଟ ନିୟମ ତଳେମାନେ ଅପସୃତ ନୋହି ସମାନ ଭାବରେ ନିଜ ନିଜର ସମୟୁତଙ୍କ କଟାଇ କର୍ତ୍ତବ୍ୟ ପରାୟଣତାର ପରମ ବା ଚରମ ପରିଚୟ ଦେଇ ଚାଲିଯାନ୍ତି ।

ପ୍ରାଣିର ସାମୟିକ ଅଯଥା ଆଚରଣରେ ଅତ୍ୟନ୍ତ ବିକ୍ଷୁବ୍ଧ ମଣିହରା ଫଣୀ ତୁଲ୍ୟ କ୍ରୁଦ୍ଧକ୍ରୋଧ ବାର୍ଦ୍ଧକ୍ୟ ଆସି ଏପରି ଗୁରୁତର କଠିନ ଶାସନାକୁ ଇନ୍ଦ୍ରିୟମାନଙ୍କ ଉପରେ ବିସ୍ତାର କରିଦାଏ ଯେ, ସେମାନେ ଉଦ୍‌ଭ୍ରାନ୍ତ ହୋଇ ସ୍ୱ ସ୍ୱ କାର୍ଯ୍ୟାବଳୀ ଚଳାଇବା ପାଇଁ ମଧ୍ୟ ଅଧିକାର ପାଇ ପାରନ୍ତି ନାହିଁ । ଯଦି ରାଜନୀତି ଲଙ୍ଘିଦେଇ, ସ୍ୱେଚ୍ଛାଚାରରେ କୌଣସି ଇନ୍ଦ୍ରିୟ ସ୍ୱ କାର୍ଯ୍ୟ ସାଧନ କରିବାକୁ ଉଦ୍ୟତ ହୁଏ, ତେବେ ରାଜନୈତିକ ଗୁପ୍ତଚରମାନେ ତାହା

ଅନ୍ୱେଷଣ କରି ସଙ୍ଗେ ସଙ୍ଗେ ବିଭିନ୍ନ ରୋଗମାନଙ୍କ ଦ୍ୱାରା ବନ୍ଦୀ କରି ରଖି ଦିଅନ୍ତି । ଇନ୍ଦ୍ରିୟମାନେ ବିନୀତ ଭାବରେ ଶତ ଗୁହାରି କଲେ ମଧ୍ୟ ରାଜାମାନଙ୍କ ତାହା ସବୁ କାନରେ ପ୍ରବେଶ ନାହିଁ । ଅଧିକରେ ଉଗ୍ରତର ଦଣ୍ଡବିଧାନ କରିବାରେ ମନୋଯୋଗୀ ହୋଇ ଉଠେ । ଦୁର୍ବଳ, ନିସ୍ତେଜ ଇନ୍ଦ୍ରିୟଗଣ ସେତେବେଳେ ଆଉ ନିଜ ନିଜର କି ବଳ ଦେଖାଇବେ, ଗତ୍ୟନ୍ତର ନାହିଁ ହସ୍ତ ହୋଇ, ବସି ରହନ୍ତି । ବାର୍ଦ୍ଧକ୍ୟ ଅହାନ୍ତ ଲୋକ, ସକଳଙ୍କର ଆଦର ଏବଂ ଭକ୍ତିର ପାତ୍ର ହୁଏ କାହିଁକି ? ସେହି ଉପରୋକ୍ତ ବାର୍ଦ୍ଧକ୍ୟର କଠିନତର ଶାସନରେ ବୃଦ୍ଧର ସକଳେନ୍ଦ୍ରିୟ ସ୍ୱକୃତ ଅପକର୍ମଜନିତ ଦୋଷରେ ରୋଗରୂପୀ ରାଜକର୍ମଚାରୀଙ୍କ ଦ୍ୱାରା ଗୃହୀତ ହୋଇ ସ୍ୱ ସ୍ୱ ସ୍ଥାନ ଗୃହକରେ ବନ୍ଦୀ ରହିବାରୁ । ଲୋକେ ଦୟା ପ୍ରବଣ ହୃଦୟରେ ବୃଦ୍ଧଜନର ଯେଉଁ ଯେଉଁ ଇନ୍ଦ୍ରିୟମାନଙ୍କର କାର୍ଯ୍ୟ ଅଭାବରେ ବିଶେଷ କଷ୍ଟ ଅନୁଭୂତ ହେଉଥାଏ ତାହାର ପୂରଣରେ ସତତ ଜାଗ୍ରତ ରହି କଷ୍ଟର ଉପଶମ କରିଦିଅନ୍ତି । ଏଥିପାଇଁ କୁହାଯାଇଛି—"ପରୋପକାରାୟ ସତାଂ ବିଭୂତୟଃ" ଜଗତରେ ସଜ୍ଜନମାନଙ୍କର ଯେଉଁ ଐଶ୍ୱର୍ଯ୍ୟ ଥାଏ, ତାହା କେବଳ ପରୋପକାର ନିମନ୍ତେ । ଅସଜ୍ଜନର ଐଶ୍ୱର୍ଯ୍ୟ ସ୍ୱାର୍ଥସିଦ୍ଧି ପାଇଁ ପିନା ଇତର ପ୍ରାଣୀର ହିତସାଧନ ନିମିତ୍ତ ନୁହେ ।

ଅତୀତ ଅବସ୍ଥା ଗୁଡ଼ିକର ଘଟନା ନିଚୟକୁ ମନେ ପକାଇ ବିବେକ, ବାର୍ଦ୍ଧକ୍ୟ ଆଗରେ ଗୋଟି ଗୋଟି କରି କହିବାକୁ ଆରମ୍ଭ କରେ । ବାର୍ଦ୍ଧକ୍ୟ, ବିବେକର କଥା ଶୁଣି ଦୟା ପରବଶ ହୋଇ, କହେ ଯେ, ଏ ବ୍ୟକ୍ତି ଇନ୍ଦ୍ରିୟଗଣର ବଶବର୍ତ୍ତୀ ରହି ସକଳ କର୍ମ କରିଥିବାରୁ ଏ ଦଣ୍ଡ ଭୋଗୁଛି । ବିବେକ ! ତୁମର ପରାମର୍ଶରେ ଯଦି ଏ କାର୍ଯ୍ୟ ଚଳାଇଥାନ୍ତା, ତେବେ ଏ ଦଣ୍ଡ ସେ କାହିଁକି ଭୋଗନ୍ତା । ଅତଏବ "ସ୍ୱୟଂକୃତଃ ପତ୍ରଃ ସହନମେବ

ଶରଣଂ” ନିଜେ ଲୋଡ଼ ଅର୍ଜିଥିବା କର୍ମଫଳ ସେ ନ ଭୋଗି, ତା’ପାଇଁ ଅନ୍ୟ କିଏ ଭୋଗ କରିବ ? । ବିବେକ, ମାନବକୁ ତୁହି ଏତିକି, ଅବସ୍ଥାଚକ୍ରରେ ଘୂର୍ଣ୍ଣିତ ହେବା ସମୟେ ଉଚ୍ଚପଦର ଅଧିରୋହଣ ଏବଂ ଅବରୋହଣରେ ଔଦ୍ଧତ୍ୟ ନଦେଖାଇ, ବିବେକର ସମ୍ପୂର୍ଣ୍ଣ ଅଟେଡ଼ କର୍ଣ୍ଣ ଯୁଗଳକୁ କ୍ଷଣକପାଇଁ ଢାଳି ରଖ । ଅବସ୍ଥାଚକ୍ରରେ ଦ୍ୱିତୀୟବାର ଘୂର୍ଣ୍ଣନ ହୁଏନାହିଁ, ଏହା ଜାଣି ଶୁଣି ନିଜ ମାନସିକ ପ୍ରବୃତ୍ତିନାରେ, ଅନ୍ୟଥା ଭଗ୍ନରଙ୍କର ତେବେ ପରିଣାମ ଯେ, କି ଭୟାନକ ରୂପ ଦେଖାଇବ, ସେଥିରେ ଚମତ୍କୃତ ବା ଆଶ୍ଚର୍ଯ୍ୟାନ୍ୱିତ ହେବାର କାରଣ କିଛି ନାହିଁ । ବାର୍ଦ୍ଧକ୍ୟ ପ୍ରଭୃତି ଲୌକିକ ଦଶା ପ୍ରବଣତାରେ ନିୟତି ସ୍ୱ ନିର୍ଦ୍ଦିଷ୍ଟ ନିୟମର ପରିବର୍ତ୍ତନ କାରିଣୀ ନୁହେ । ସେ ଅବସ୍ଥାଚକ୍ରସ୍ଥ ପ୍ରାଣିକି ଖେଳାଇବା ପାଇଁ ଥରେ ମାତ୍ର ବୁଲାଇଦିଏ । ଚକ୍ରଟି ବୁଲିବା ସମୟେ ପ୍ରାଣିର ପତନ ବା ଉତ୍ଥାନ ପ୍ରତି ଦୃଷ୍ଟି ନ ରଖି କେବଳ ସ୍ୱ କର୍ମନିଷ୍ଠତାର ପ୍ରକୃଷ୍ଟ ପରିଚୟ ଦିଏ । ସେତିକିମାତ୍ର ଅଧିକାର ନିୟତି ପାଇଁ ଉଦ୍ଦିଷ୍ଟ । ତହିଁରୁ ଅଧିକ କାର୍ଯ୍ୟକଲେ, ତାହା ନିୟତିର ଅନଧିକାର ଚର୍ଚ୍ଚା ବୋଲି ପରମାତ୍ମାଙ୍କ ଦରବାରରେ ନିଶ୍ଚୟ ସମାଲୋଚିତ ହେବ । ଚନ୍ଦ୍ର ସୂର୍ଯ୍ୟାଦିମାନେ ସ୍ୱଚକ୍ଷୁରେ ତାହା ଦେଖି, ସମାଲୋଚନା ନକରି, କେବେହେଲେ ନିୟତିକି ପରମାତ୍ମାଦରବାରରେ ଛାଡ଼ିବେ ନାହିଁ । ସେଥିଲାଗି ପ୍ରଥମରୁ ଜାଗ୍ରତ ରହି, ଏପରି କାର୍ଯ୍ୟ କରିପାଏ ଯେ, ଭବିଷ୍ୟତରେ ଆଉ ଯେପରି ସେ ସମାଲୋଚ୍ୟ ନୋହିବ । ଧନ୍ୟ, ନିୟତି ! ଧନ୍ୟ ତୋ’ କାର୍ଯ୍ୟ । ଧନ୍ୟ ମାନବ ! ବିବେକର ପରାମର୍ଶ ଯାହା ଏକବାରେକେ ଭୁଲି ଯାଉଚ ??

—ସ ମା ପ୍ତ—

ବ୍ରହ୍ମପୁର, ରଥ ପ୍ରେସରେ ଶ୍ରୀ ରାମଚନ୍ଦ୍ର ରଥଙ୍କଦ୍ୱାରା ମୁଦ୍ରିତ, ୧୯୫୫